ଏ ଭଲ ମନ୍ଦ ନାର ହାନି । କ ଅବା ପଣ୍ଡ ବସୁରଣୀ ।
ଏମନ୍ତ ମନରେ ନ ଘେନ । ହସନ୍ତି ନବଯଉବନୀ ।
ତାଙ୍କ ସୁଖର ହାସମୁଖ । ତୁମ୍ଭେ ନ ଜାଣ ମନେ ଦୁଃଖ ।
ଏ ଯେ ତୁମ୍ଭର ଅବେଶର । ବକ୍ଷରେ ନୋହେ କ ଅମ୍ଭର ।
ଏଣେ ସେ ତା ବଶ କରିବା । ବେଟ ହୋଇଲେ ଜୋ ବୁଝିବା
ଅଗର ହେଉ ଯୁବଥାନ୍ତି । ଦେଖିବୁ କ ହବେ ସଖି ।
ସମସ୍ତେ ବେଢ଼ିଥିଲ ଜତ । ସ୍ତ୍ରୀତ୍ରଙ୍କୁ ଯେସବେ ତିମ୍ଭ ତ ।
ଏବେ ଅଷ୍ଟଲେ ବାଜଥିବ । ତୋ ପାଦରଲେ ପଡ଼ାଇବ ।
ତୋହର ଖାନ୍ତି ଦେଲେ ଶ୍ଳେଷ । କ୍ଷମା କରବୁ ତାର ଦୋଷ ।
ତୋହଲେ ପାଦେ ପଡ଼ିଥିବ । ତୋଡବ ଏଡ଼େ ଜା ଗରବ ।
ତୋର କରୁଣା ଅଙ୍ଗ ଶୁଣି । ତେବେ ସେ ପେଣରୁ ବ.ନ୍ଧି ।
ଏହା ମୁଁ କରବ ପ୍ରମାଣ । ହେ ସଖି ଶ୍ରୁତି ଅଭିମାନ ।
ତୁ ଯେବେ ବୁଣକ୍ଷ୍ନିଥିଅ । ମୋର ମହିମା ବୁଝିନଥ ।
ଏସନ୍ତ ବୋଲ ଠାକୁରାଣୀ । ଅଷ୍ଟଲେ ଗଣ୍ଡି ଦେଲେ ଟାଣି ।
ବୋଇଲେ ଏଲ ନେଉଛିବା । ଅମ୍ଭେ ତାହାଙ୍କୁ କ ନୋଡବା ।
ଆଇଲେ ଅସୁ ତାର ସୁଖେ । ଅମ୍ଭେ ଖୋଜବା କେଉଁମୁଖେ ।
ବୃନ୍ଦାକୁ ଯାହା ସେ କହଇ । ସବୁ ଗୋପୀଙ୍କି ସେ ଅଣ୍ଡି ତୁ ।
ଏବେ ହଳ ଅଣି ଏତେ । ତହ ଗୋ ଲାଜ ଆଉ କେତେ
ଯେବେ ବେଗରେ ତାର୍ଯ୍ୟଥିବ । ତାହାର ନିହାରେ ଅସିବ ।
ତେବେ ଯୋହାଏ ତା ମହର । ରହବ କହିଲୁ ଟି ସର ।
ଏଥା ଏରୂପେ ବୋଲିହର । ଉଠିଲେ ବୃନ୍ଦାହର ଧର ।
ଜାନ୍ଦୁଶ ବଳେ କହଘଲେ । ଷୋଲସହସ୍ର ଏହାବେଲେ ।
ସମୁହାଡପାହ୍ଲଲେ ଯାଇ । ବୃନ୍ଦାର ମୁଖ ଅଣି ଧୋଇ ।

ରକ୍ଷିବେ ବୋଲି ନିଜ ଦାସ । ଏ ସ୍ତମ୍ଭେ ହୋଇବେ ପ୍ରକାଶ ।
ସେ ସ୍ତମ୍ଭ ସ୍ଥାପିବେ ପଥର । ତହୁଁ ସେ ହୋଇଲେ ବାହାର ।
ଏରୂପେ ମଲ୍ଲ ତା ବଦନ୍ତି । ପ୍ରକାଶ ସେହି ରୂପ ଧରି ।
ସେ ମତ ସ୍ତମ୍ଭେ ବୁଢ଼ା ହେଲା । ସ୍ତମ୍ଭେ ଗୋବିନ୍ଦଙ୍କୁ ଫଟାଲା ।
ଅମ୍ଭର ମତ ଯେବେ ସତ । ଯାଉଛୁ ଗୋବିନ୍ଦ ସଙ୍ଗତ ।
ସେ ଧର ଅଛିବ ପ୍ରମାଣ । ଏ କଥା ମୂଳ ହିର ଜାଣ ।
ସୁଧର୍ମ୍ମ ବୋଲନ୍ତି ଉତ୍ତର । ତାସ୍ତୁ ବଚନ ମନେ ଧର ।
କୃଷ୍ଣଙ୍କୁ ହେ ଧର ପାଇବ । ବ୍ରହ୍ମା ବାସବ ବାମଦେବ ।
ଯଜ୍ଞାଦି ନାନାଧର୍ମେ ସବ । କୃଷ୍ଣ ଶ୍ରୁଅନ୍ତି ପଶ୍ଚାତ ।
ପୂର୍ବେ ଯେ ବଳ ଦଣ୍ଡଧାରି । ଯଜ୍ଞାଦି ନାନାକର୍ମ କରି ।
ତା ନିଜ କର୍ମବଳ ଦେଖ । ଭଣ୍ଡାରି ହେଲେ ପଦ୍ମମୁଖ ।
ଏବେ ମୋ ଦେଖ ଧର୍ମବଳ । ଗୋବିନ୍ଦ ତାର ଦ୍ୱାରପାଳ ।
ଏଣୁ ଜାଣିଲୁ କଥା ସତ । କୃଷ୍ଣଟି ଧର୍ମରେ ପ୍ରାପତ ।
ଯେବେ ଅମ୍ଭର ଧର୍ମ ସ୍ଥିବ । ତାହାର ନିକଟେ ଅସିବ ।
ସୁଧର୍ମ୍ମ ମନ୍ତ୍ରୀ ତାହା ଶୁଣି । ବୋଲନ୍ତି ରାଧା ଠାକୁରାଣୀ ।
ଶୁଣ ସୁଧର୍ମ୍ମ ଅଟେ ଅସ । କହିବା ତତ୍ତ୍ୱ ଉପଦେଶ ।
ଏ ନାନାମତେ ଧର୍ମ କରି । ପ୍ରାପତ ହୁଅନ୍ତି ଶ୍ରୀହରି ।
ଏ ଧର୍ମ ଫଳ ହିର ପୂର୍ଣ୍ଣ । ଅନ୍ତର ହୋନ୍ତି ଭଗବାନ । ୩୦ ।
ଏ ପଶୁପତ ତର କୃତେହ । ପୁଣି ପୃଥ୍ୱୀର ମାୟାମୋହେ ।
ଖାଇତ ପୁଞ୍ଜିଗଲେ ବୃଷ । ସାନ୍ତୁର ନାହିଁ ପ୍ରୟୋଜନ ।
ତେବେ ପୁଣି ଧର୍ମବିଣ । ଅନ୍ତର ହୋନ୍ତି ଭଗବାନ ।
ଦଶଧା ଭକ୍ତିମଧ୍ୟେ ଜାଣ । ସବୁର ପ୍ରେମଟି ପ୍ରଧାନ ।
ପ୍ରେମେ ଅବଶ୍ୟ କୃଷ୍ଣ ପାଇ । କୃଷ୍ଣ ଯେ ନସେଲେ ଉଦୟ ।

ଅପ୍ରୀତ ପ୍ରୟୋଜନେ ଚର । ଗୋବିନ୍ଦ ସହିତେ ଅନ୍ତର ॥
ଅମୃତ ପ୍ରୟୋଜନ ପ୍ରେମ । ଏଣୁ ଏ ହୃଦଇ ଉତ୍ତମ ।
ଅମୃତ ନିଜ ପ୍ରୟୋଜନେ । ଅଇଲୁଁ ତୋର ବେଣୁସ୍ୱନେ ।
ପ୍ରୟୋଜନରେ ପ୍ରେମ ଦେଖି । ଗୋବିନ୍ଦ ଗଲେଟି ଉପେକ୍ଷି ।
ଏବେହେଁ ନିଜ ପ୍ରୟୋଜନେ । ତାହାଙ୍କୁ ଖୋଜୁଅଛୁ ବନେ ।
ଅପ୍ରୟୋଜନ ପୂର୍ଣ୍ଣ ହେଉ । ନିଷ୍ପ୍ର ଘୁଞ୍ଚିଯିବ ହେଉ ।
ଘଟିଲା ଉତ୍ତରେ ଅମୃତ । ହୋଇବ ପ୍ରେମ ବଳଅର ॥
ଦର୍ଶନ ବାଞ୍ଛାମାତ୍ର ଥିବ । କାଳେ ଦର୍ଶନ ଯେ ହୋଇବ ॥
ଦର୍ଶନେ ନ ରସିବ ମନ । ଏକାନ୍ତ ପ୍ରେମରେ ନିମଗ୍ନ ।
ଦର୍ଶନ ସ୍ପର୍ଶନରେ ଇଚ୍ଛା । ନ ଥିବ କିଛି ମନବାଞ୍ଛା ॥
ତେବେ ଲଭିବା ନିଜରସ । କୃଷ୍ଣ ହୋଇବେ ଅମ୍ଭ ବଶ ।
ପଦ୍ମେ ପୁରାଣେ ଅଛୁଁ ଶୁଣି । ବନରେ ଏକ ଶବରୁଣୀ ।
ତଣା ଆମ୍ଳିଲ ଫଳମାନ । ଆପଣେ କରଇ ଭୋଜନ ।
ସୁସ୍ୱାଦ ଫଳ ଯେତେ ପାଇ । ଚାଖି ଗୋବିନ୍ଦଙ୍କୁ ଦଅଇ ॥
ଅଣଚାଖିଲା ଫଳେ ଆଶ । ଚାଖିଲା ଫଳେ ଥିଲା ଦିଶି ।
ଗୋବିନ୍ଦ ସେ ଫଳକୁ ଚାହିଁ । ଦେଖିଲେ ଦନ୍ତ ଚିହ୍ନ ନାହିଁ ॥
ଅଶୁଦ୍ଧ ବୋଲି ଉପେକ୍ଷିଲେ । ଶବରୀମୁଖକୁ ଚାହିଁଲେ ।
ଦନ୍ତ ସନ୍ଧି ନ ଏଥି ନାହିଁ । ଆମ୍ଭେ ଖାଇବୁଁ ଏହା ନାହିଁ ।
ଏବେହେଁ ଚାଖି ଏହା ଦେବ । ତେବେ ମନୋହର ଯୋଗ୍ୟ ହେବ
ଶବରୀ ଏ ବଚନ ଶୁଣି । ଫଳ ଚାଖିଲା ଦନ୍ତେ ଘେନି ॥
ବୋଇଲା ସୁଁହୁ ଫଳ ଏତ । ଗୋବିନ୍ଦ ଭକ୍ଷିଲେ ତୁରିତ ॥
ଅପ୍ରୟୋଜନେ ପ୍ରେମ ପାଇ । ନୀଚ ଉଚ୍ଛିଷ୍ଟ ଦେଲେ ଖାଇ ॥
ଯା ପ୍ରେମେ ପ୍ରୟୋଜନ ଥିବ । ସେ ନାହିଁ କୃଷ୍ଣଙ୍କୁ ପାଇବ ।

ତା ପ୍ରୟୋଜନ ତାଙ୍କୁ ଦେଇ । ଗୋପନ ତାହାଙ୍କୁ ଛଡ଼ାଇ ॥
ଅପ୍ରୟୋଜନ ପ୍ରେମ ସାର । ଗୋପନ ଅଧିକ ତାହାର ॥
ଅପ୍ରୟୋଜନ ପ୍ରେମ ଯନ୍ତ୍ର । ଜନ୍ମଇ ଏବେ ଶୁଣ ତନ୍ତୁଁ ॥
ସାଧୁସମୂହ ପଲ୍ଲବନେ । ଯେବେ ସେ ଭ୍ରମରବିଧାନେ ॥
ସାର ସଜ୍ଜନ ମାର୍ଗ ଚଳେ । ଅସାର ଦୂରେ ପରିହରେ ॥
ବସ୍ତୁ ପଦାର୍ଥ ବୋଲି ଜାଣି । ଅମୂଲ ଅମୃତ ନ ବଣି ॥
ଶୃଗାଳ ପଦାର୍ଥ ପ୍ରମାଣ । ବାଞ୍ଛା ସ୍ୱପ୍ନରୁ ଅମୃ ଅଣ ॥
ତାହା ଯେସନେ ବେଗେ ଦଶି । ଯଥାର୍ଥ ଜ ଛଡ ନ ଚଣି ॥
ରଜତ ଜ୍ଞାନ ଉପଦେଶ । ସେଠାରେ ପାଇବ ବିଶ୍ୱାସ ॥
ଗୁରୁବଚନ ପ୍ରାପ୍ତ ହୁଅ । ହୃଦେ ରକ୍ଷିବ ଦୃଢ଼େ ଧର ॥
ଉତ୍ତମ ହୋଇଲେ ପ୍ରାପତ । ମଧ୍ୟମ ଛାଡ଼ିବ ତୁରିତ ॥
ଉତ୍ତମ ମଧ୍ୟମ ବସ୍ତୁ । ସେ ଅବା ଅଛନ୍ତି ନିକୃଷ୍ଟ ॥
ଅଛନ୍ତି ଶ୍ରେଷ୍ଠଭାବ ଲୋକ । ହୃଦର ମନେ ମନେ ଦେଖ ॥
ଅଗାଧ ଜଗନ୍ନ ପ୍ରବଣେ । ଶାସ୍ତ୍ର ଯେ ଯା ମନ ବିଧାନେ ॥
ଯେମନ୍ତ ମନ୍ତ୍ର ଯନ୍ତ୍ର ଭବେ । ଯେ ଜ୍ଞାନ ଯେଉଁ ଗୁରୁ ମତେ ॥
ସାର ଅସାର ବସ୍ତୁଗଣେ । ମିଳଇ ଶତ୍ରୁ ଦରଶନେ ॥
ସମସ୍ତ ସଙ୍ଗେ ସମେ ମିଶି । ଶୋଧଇ ସବୁ ପରେ ପଶି ॥
ଯେସନେ ଶୂକାଂହସ୍ତେ ଥାଇ । ପ୍ରଥମେ ଲୋହ ସଙ୍ଗେ ଯାଇ ॥
ଲୋହକୁ ଯହିଁ ଆଉ ଧର । ତମ୍ବା ପ୍ରାପତେ ଦୂର କର ॥
ତମ୍ବାକୁ ଦୃଢ଼େ ଧର ଥାଇ । ରୂପା ପାଇଲେ ତା ଛାଡ଼ଇ ॥
ରୂପାକୁ ଧର ଥାଇ ଶିରେ । ସୁନା ପାଇଲେ ଦୂର କରେ ॥
ଲଭିଲେ ପରଶ ରତନ । ସୁବର୍ଣ୍ଣ ତେଜଇ ବନ୍ଧନ ॥
ଅମୂଲ୍ୟ ଅବ୍ୟସ୍ତ ବିଶ୍ୱାସ । ସମ୍ପଦ ସୀମାନ୍ତ ପରଶ ॥

ସୁବର୍ଣ୍ଣେ ନାର୍ଯ୍ୟ ସ୍ଵବାଯାଏ । ପରଶ୍ନ କରଇ ସଖ୍ୟେ ॥
ସୁବର୍ଣ୍ଣେ ଯାର କାର୍ଯ୍ୟ ନାହିଁ । ପରଶ୍ନ ସେ ସ୍ପୃହ ନାହିଁ ॥
ଖଣ୍ଡଇ ସୁବର୍ଣ୍ଣର ଆଶ । ପରଶ୍ନ ଗୋଡ ପ୍ରାପ୍ୟେ ଦୁଃଖ ॥
ଯେବେ ସେ ପରଶ୍ନ ଉପେକ୍ଷି । ତୁଚ୍ଛାଂଶ୍ର ତୃଣ ପ୍ରାପ୍ୟ ଲେଖି ॥
ଇନ୍ଦ୍ର କୁବେର ଅବ ହର । ଦଖଲ୍ପ ଯେସନେ ଭକ୍ଷ ସ୍ଵ ॥
କୃଷ୍ଣର ଗ୍ଦବେ ସ୍ନେହ ହୋଇ । କୃଷ୍ଣଙ୍କୁ ଆଉ ନ ଲୋଡ଼ଇ ॥
ପ୍ରେମପୀୟୂଷେ ଭୃତ ମନ । ଇଚ୍ଛା ନ କରେ ଦରଶନ ॥
କହୁହିଁ ମନୋରଥ ନାହିଁ । କୃଷ୍ଣଙ୍କୁ ସେ ଲୋଡବ କାହିଁ ॥
ସବନେ ଯାର ତତ୍ତ୍ଵ ବୋଧ । ତଉବର୍ଗରେ ନାହିଁ ସଖ ॥[illegible]
ଦୁଃଖ ସୁଖରେ ସମ ଭାବ । ପରମ ହଂସ ଦେ ବାହ୍ୟ ॥
ସର୍ବଥ ମନେ ଉଦାସୀନ । କାଅଲ୍ପା ମଲ୍ଲ ନହିଁ ଭବ ॥
କୃଷ୍ଣ ଚରଣେ ପୂର୍ଣ୍ଣ ସ୍ନେହ । ଗରୁ ମଣଇ ନିଜ ଦେହ ॥
ତା । ପ୍ରେମଧନ୍ନୁ ବନଆଇ । ତ୍ରିଗୁଣ ଗ୍ରଡାଇ ନହିଁଇ ॥
ଗୁଣ ଛାଡନ୍ତେ ଦର୍ମକାଣ୍ଡେ । ଛୁଟି ପଡଲେ ଯେଝା ଦାଣ୍ଡେ ॥
ଗୁଣ ସହଟେ ଖର ଗଲା । ସେ ଧନୁ ସଲକ୍ଷି ରହିଲା ॥
ଗୁଣ ଛାଡିଲା ଖର ନାହିଁ । ବନରେ ଯଷିବ ସେ କାହିଁ ॥
ଧନୁକୁ ଦର ଅଶ ବାଉ । ଗମିଲା ସାଧୁପ୍ରଥ ମାତ ॥
ଶୁଣ ସ ଧନ୍ଦ୍ର ଆଚରଣ । ଯେ ଗୁରୁ ବଧନ ଲକ୍ଷଣ ॥
ଦୟା ବନସ୍ଥ ଯଣ କ୍ଷମା । ନିବୃତ୍ତକର୍ମ ପ୍ରେମସୀମା ॥[illegible]
ଜଗତ ଗୁରୁ ଦ୍ଵାପ୍ତ ଦେଶେ । ଆତ୍ମାକୁ ଦିଶେଇବେ ଭସେ ॥
ସେବା କହଇବାକୁ ଭଲେ । ସେବା କଇଇ ନିରନ୍ତରେ ॥
ଗ୍ରାହ୍ୟ ମଣଇ ବହୁ ଦେବା । ଅଗ୍ରାହ୍ୟ ମଣଇ ସେବା ॥
ମିଳିହିଁ ତତ୍ତ୍ଵସ୍ଥଳେ ଜାଣ । ବୋଲଇ ଆଜ୍ଞା ପରମାଣ ॥

ଅପଣେ ଷର ଚଷୁଥାଇ । ଗୋଷ୍ଠୀଏ ମୋହିଲା ବୋଲଇ ।
ଷଲ ମିଛଲୁ ଷର କରେ । କଉଣ ହବାଦଲୁ ଡରେ ।
ଜାଣିବା ଜଣିବା ଏ ହୁଇ । ଏହାଙ୍କୁ ଏଡ଼ ମଣିଥାଇ ।
ଅଲ୍ପରେ ଧର୍ମ କର୍ମ ଜାଣେ । ପଣ୍ଡିତ ପଣେ ନ ବଖାଣେ ।
ଅଜଣା ଚହୁଁ ମାରନ୍ତେ । ସେ ନ ଦେଖଇ ଫିଲ୍ଲବନ୍ତେ ।
ଏଣୁ ସେ ଉଚ ଚତୁର୍ଦ୍ଦଶ । ଗୋବିନ୍ଦ ତାହାଙ୍କୁ ପ୍ରଶଂସେ ।
ଭୁବେ ସମ୍ପୂର୍ଣ୍ଣ କୃଷ୍ଣରସ । ସର୍ବଦା ଆନନ୍ଦ ସନ୍ତୋଷ ।
ଅଳ୍ପ ବୟସେ କଷ୍ଟ ଯେବେ । ନ ବୋଲେ କୃଷ୍ଣେ ମୋ'ରେ ଦେବେ
ଯେ ଦୁଃଖ ଶରୀରେ ତାହାର । ନ ବୋଲେ କୃଷ୍ଣ ଭଲ କର ॥
ଜଳରେ ପହାଚଲେ ନେଇ । ରଣ ଗୋବିନ୍ଦ ନ ବୋଲଇ ।
ଯେବେ ଛେଦବ ତା'ର ଶିର । ନ ବୋଲେ କୃଷ୍ଣ ରକ୍ଷା କର ।
ଧର୍ମ ଅଧର୍ମ ସବୁ ସହେ । ଦେବଲି ମନ କୃଷ୍ଣ ଦେହେଁ ।
କର୍ମେ ଯେ ଭଲମନ୍ଦ ପାଇ । ଦେବେ କୃଷ୍ଣଙ୍କୁ ସମର୍ପଇ ।
କୃଷ୍ଣଙ୍କ ବନ୍ଧୁହିଁ ନ ମାଗେ । ଜନ୍ମଛି ଥା'ଇ ଅନୁରାଗେ ।
କୃଷ୍ଣ ତାହାର ସଙ୍ଗେ ଥାନ୍ତି । ତାହାଙ୍କୁ ଏମନ୍ତ ବୋଲନ୍ତି ।
ବ୍ରହ୍ମାଦି ରୁଦ୍ର ଇନ୍ଦ୍ର ତୁଅ । । ବ୍ରହ୍ମାଣ୍ଡ ଅଧିକାର ନଅ । ୮୦ ।
ତୁ ତୁଅ ବ୍ରହ୍ମାଣ୍ଡ ଠାକୁର । ମୁଁ ଦେଲି ତୋହର କର ।
ମୋ ନିଜ ଅଧିକାର ଦେଲି । ତୋହର ଆଜ୍ଞାବର୍ତ୍ତୀ ହେଲି ।
ଏମନ୍ତ ଶୁଣି ଭକ୍ତ ହସି । ବୋଲଇ ଶୁଣ ବ୍ରହ୍ମସାକ୍ଷୀ ।
ମୋ ମୂଳଧନ ତୋର ଭାବ । ତୋଠାରେ ପାଉଛୁ ଚହୁଁ ଲାଭ ।
ଯେବେ ମୋ ପ୍ରଯୋଜନ ନାହିଁ । ମୂଳରୁ ଦାଢ଼େ ନ ଛଡ଼ାଇ ।
ସେହିଠାବ ବ୍ରହ୍ମାପଦ ବଡ଼ । ମୁଁ ଯେ କହଇ ସେ ମା'କଡ଼ ।
ଇନ୍ଦ୍ର ସମ୍ପଦେ କାର୍ଯ୍ୟ ନାହିଁ । ମୁଁ ଯେ ନୂହଇ ପିତୃଦ୍ରୋହୀ ।

ତୁ ବୈରୀବଂଶ ବିନାଶନ । ଦେବ ଚରାଙ୍ଗୀ ଗଞ୍ଜନ ॥
ମାଗ ବାଞ୍ଛିଲେ କୁବେର ଧ୍ରୁବ । ଅତହିଁ ଉଚ୍ଚେ ବସାଇବ ॥
ମୁଁ ବ କୋଇଲ୍ରୀ ଗଣ୍ଡୁର । କରିବ ପଡ଼ିହାରୀ ଦ୍ୱାର ।
ଇନ୍ଦ୍ର ଜନକ ମଣୁ ମୋତେ । ତୁମେ ଡ଼ା ଧରିଅଛ ଶୋତେ ॥
ମୋ ଷଣ୍ଢ କୋଡ଼େ ସୁନାସୀର । ଦ୍ୱାର ଜଗିବୁ ଚକ୍ରଧର ॥
ମୁଁ ଯେ କୁହଇ ସେ ଉଦ୍ଧବ । ପୁଚ୍ଛିବ ଭକତ ପ୍ରସ୍ତାବ ॥
ଇହ୍ୟ ଦୂଜା ପାହୁଁ କେବ । ତପ ସାଧନେ ବନେ ଯିବ ॥
ସୁଦାମା ଦ୍ୱିଜ ମୁଁ କୁହଇ । ଧନ ବାଞ୍ଛିବ ଦେଖି ଯାଇ ॥
ଇନ୍ଦ୍ରତ ପ୍ରାପ୍ତ ମଣୁ ମୋତେ । ଯୁଦ୍ଧ କରବ ତୋ ସଙ୍ଗତେ ॥
ମୁଁ ଯେ କୁହଇ ସ୍ୱର୍ଣ୍ଣଦେବ । ଷଣ୍ଢି ଅହଂକାର ବହିବ ॥
ଆପଣା ପ୍ରତିଜ୍ଞା ରଖିବ । ତୁମ୍ଭର ସତ୍ୟ ଛଡ଼ାଇବ ॥
ମୁଁ ତ ସେ କୁହଇ ନାରଦ । କହିବ ଗୋଲୋକର ଭେଦ ॥
ସ୍ୱପରସ୍ଥଳ ତୋର ଯେତେ । ବ୍ୟକତ କରେ ଜଗତେ ।
ଏ ପତ୍ରରୂପେ କାର୍ଯ୍ୟ ତାହିଁ । ଏ ଯଶ ଥାଉ ତଙ୍କ ରହିଁ ॥
ମୁଁ ଯେ କୁହଇ ଶୁକଦେବ । କହିବ ପୁରାଣ ପ୍ରସ୍ତାବ ॥
ଭୂପତି ପୂଜିବେ ଚରଣ । ଜଗତେ ଥିବ ଯଶ ଗୁଣ ॥
ଏ ନିଷ୍ଠା ପ୍ରତିଷ୍ଠାରେ ରତ । କେବେହେଁ ନୋହେ ମୋର ଚିତ୍ତ
ବ୍ରହ୍ମାଦି ଇନ୍ଦ୍ର ହର ହର । ବୁଝିଲି ସୁଖ ତାହାଙ୍କର ॥
ସୃଷ୍ଟି ରଚିବେ ବ୍ରହ୍ମା ମନ । ପ୍ରତିହିଁ ହେବେ ସେ ଉଛନ୍ନ ॥
ହଣ୍ଡେହେଁ ସ୍ଥିର ନୋହେ ଚିତ୍ତ । ତୋ ନିଜ ମାୟାରେ ମୋହିତ ॥
ସୃଷ୍ଟି ରଚନେ ଶ୍ରମ ପାଇ । ଶେଷେ ପ୍ରଳୟ ନାଶ ଯାଇ ॥
ପ୍ରଭୁହିଁ ଉଠି ପ୍ରଭାତନ । କରଇ ସଂସାର ଭିଆଣ ॥
ତାହାର ସ୍ନେହ କାର୍ଯ୍ୟକର୍ମ । ନ ଜାଣେ ତୋ'ର ଭାବ ମର୍ମ ॥

ଘୋର ସମ୍ପଦ ବଡ଼ ଭୋଗେ । ଏହା ନ ଲୋଡ଼ନ୍ତି ଭକତେ ॥
ଶ୍ରୀ ନାଥ ଆହାଶ ଶ୍ରବଣ । ରୁଦ୍ର ସମ୍ପଦ ଏବେ ଶୁଣ ॥
ବୃଷ ବାହନ ଦିଗମ୍ବର । ଭସ୍ମ ଭୁଜଙ୍ଗ ଅଲଙ୍କାର ॥
ଶ୍ମଶାନଭୂମି ମଧ୍ୟେ ରହି । ସେ ଭୂତନାଥ ନାମ ବହି ॥
ସବୁହିଁ ଦଡ଼ମ୍ଭନ ସ୍ଥିତି । ଯୋଗୀନ୍ଦ୍ର ଅର୍ଦ୍ଧାଙ୍ଗ ଯୁବତୀ ॥
ସେ ଦଣ୍ଡେ ନ ଛାଡ଼ବ ନାରୀ । ସେ କର୍ପା କାମ ଭସ୍ମ କଇ ॥
ଯେବେ କାମିନୀ ସଙ୍ଗେ ପ୍ରୀତି । କପାଳ ଯାଳଲେ ପଞ୍ଚାଶ ॥
ଗରଳ ଅଶେଷ ଆହାର । ତା ପାନ କଲେ ଶୂଳଧର ॥
କ୍ରୋଧ ଅଶେଷ ଯୋଗିଙ୍କର । ସେ ମୁଣ୍ଡ ମୋଡ଼ିଲେ ବ୍ରହ୍ମାର ॥
ଅଶେଷ ଯୁବତୀଙ୍କ ସଙ୍ଗ । ଭଦ୍ରାଙ୍କୁ କଲେ ଅର୍ଦ୍ଧଅଙ୍ଗ ॥
କଷ୍ଟଲୀଳାରେ ହେଲେ ହର । ଚନ୍ଦ୍ରଶେଖର ଗଙ୍ଗାଧର ॥
ବେଦେବେହିଁ ରଜନୀ ଦିବସ । ଜଳ ଭାଜନବାରେ ସନ୍ତୋଷ ॥
ଗୋବିନ୍ଦ ମସ୍ତକ ମୁକୁଟ । ଶାର୍ଦ୍ଦୂଳଚର୍ମ କଟୀତଟ ॥
କପୋଳେ ଚନ୍ଦ୍ରମା ଅନଳ । କଣ୍ଠେ ଭୁଜଙ୍ଗ ମୁଣ୍ଡମାଳ ॥
ମଙ୍ଗଳ ଅମଙ୍ଗଳ ବେଶ । ସେ ନିତ୍ୟ ସଙ୍ଗେ ଥାନ୍ତି ଯେନ
ହସ୍ତିଙ୍କୁ ଦୈତ୍ୟ ବାଞ୍ଛାବର । ଭେଟାଇ ଦେଲ ବୃଷାସୁର ॥
ସେ ବ୍ରହ୍ମଜ୍ଞାନୀ ବ୍ରହ୍ମମୟେ । ତାହାଙ୍କ ନାହିଁ ନା ପ୍ରଳୟେ ॥
ଅତୀତ ନୀତ ତାହାଙ୍କର । ତୁମ୍ଭେ ସେ ତାଙ୍କୁ ପଣ୍ଟାନ୍ତର ॥
ତାଙ୍କ ସମ୍ପଦ ତାଙ୍କ ଭୋଗ । ମୁଁ କବ ତାଙ୍କ ପଦେ ଯୋଗ୍ୟ ॥
ଘୋର ଅଧୀନ ଚତୁର୍ଦ୍ଦଶ । ତୁ ହେଉ ଯେଉଁସବେ ବଶ ॥
ଏଥି ଅଧିକ ଏ ସଂସାରେ । କେ ଅଛୁ ତୁମ୍ଭ ଅଧିକାରେ ॥
ତାହା ଯାଉଲେ ମୋତେ କହ । ନୋହିଲେ ତୁନି ହୋଇ ରହ ॥
ଜଗତୁ ଲକ୍ଷ୍ମୀ ତାତ ମାତ । ତୁମ୍ଭର ନାହିଁନା ସାଥନ୍ତି ॥

ଅନାଥ ଅରହିତ ଜନ । ତୁମ୍ଭର ପ୍ରାପ୍ତ ଭଗବାନ ।
ଅକ୍ଷୟ ଦେହ ଏ ଜଗତେ । ତୁମ୍ଭଙ୍କୁ ମାଗିବ ପଦାର୍ଥେ ॥
ଦେବ କଙ୍କାଳ ପ୍ରାପ୍ତ ଦକ୍ଷେ । ପଦାର୍ଥ ମାଗିବ ମୁଁ କ ଷେ ॥
ତୋର ଚରଣେ ପୂର୍ଣ୍ଣ ସ୍ନେହ । ଅନ୍ତୁ କ କାହିଁ କେ ଦେହ ।
ଏହା ନ ଜାଣେ ଭବଭୋଳେ । ମନ ତୋ ଚରଣକମଳେ ॥
କ ତୁଷ୍ଟି କବା ସାଧୁଜନ । ଅମୃତ ସମସ୍ତେ ସମାନ ।
ତୁଷ୍ଟି କରାଇ ହନ୍ତ ଯାନ୍ତି । ତୁ ନାଥ ପରମଦୟାନ୍ତି ।
ଏଣୁଟି ତୁମ୍ଭର ଆମ୍ଭର । ଭକ୍ତରେ ଅଭେଦ ପ୍ରକାର ।
ମୁଁ ଦସଦଶ ପଞ୍ଚଭୂତ । ଏକାନ୍ତେ ତୋର ଭାବେ ଭୂତ ॥
ଗୁପତେ ଗୋଚରେ ଦେଖୁଥିଲ । ବ୍ୟକ୍ତରେ ଦର୍ଶନ ପାଇଲ ।
କର ବାଞ୍ଛିଲେ ଯେତେ ଦାସ । ତାହାକୁ କର ଦେଲ ତୋଷ ।
ସେ ଜନ ଭକତ ତୁମ୍ଭର । ତୋ ଭାବ ମନେ ଧନେଶ୍ୱର ।
ଯେତେ କହିଲେ ନ ସରଇ । ଅଧିକୁଁ ଅଧିକ ବଢ଼ଇ ।
ତୋ ସଙ୍ଗେ କଥା କହିବାର । ଗୁଡ଼ ଅନ୍ତର ତତ୍ତ୍ୱ ମୋର ।
ଦ୍ୱିତୀୟ ସଙ୍ଗ ଥିବାଯାଏ । ମନ ନ ପଶେ ତୋର ପଏ ॥
ତୋହର ବଳେ ଜଗ ଗଲେ । ତୋ ଭାବେ ଭୂତବ ଜଟେଲେ ।
ତୁ ଏବେ ଦଶ ମାଛ କଇ । ସ୍ୱେ ନାଥ ଦେଉଛୁ ଉତ୍ତର ।
ଜୟାନ ଚର୍ମେଟ ଜାବଣ । ଯନ୍ତୁଁ ଶୁଣିଲେ ପୀତବାସ ।
ଦଣ୍ଡ ଲୁଣ୍ଠିତ ସୁରଙ୍ଗ । ପୁଲକ ପୂରିତ ସର୍ବାଙ୍ଗ ।
ନୟନେ ଅଶ୍ରୁ ଥନ ଥନ । ଢାଳରେ ବହୁଳ ବଚନ ।
କୃଷ୍ଣ ବୋଲନ୍ତି ଧନ୍ୟ ଧନ୍ୟ । ଧନ୍ୟରେ ଭକ୍ତ ତୋ ବଚନ ।
ଅନେକ ବସ୍ତୁ ରୁଦ୍ର ବ୍ରହ୍ମା । ନେ ଦଶ ପାରେ ତୋ ମହିମା ।
ତୋ ନାମ ସୁମରଣା ତୋର । ଯାହା ମଙ୍ଗଳ ଶୁଭଫଳ ।

ନିଷ୍କାମ ଭକ୍ତି ବଳେ ତୋର । ମୁଁ ହିଁ ପାଳଇ ଏ ସଂସାର । ୨୨୦॥
ମୋ ଆତ୍ମା ଇଷ୍ଟଦେବ ତୁହୁ । ତୁ ମୋର ମନେ ବାଞ୍ଛାଉଛୁ ॥
ନିଷ୍କାମ ଭାବେ ତୋ ଭଜନ । ତୋ ଦେହେଁ ହୋଇବି ମୁଁ ଲୀନ ॥
ଏମନ୍ତ ବୋଲି ଭଗବାନ । ଭକ୍ତଙ୍କୁ ଦେଲେ ଆଲିଙ୍ଗନ ॥
ଭକ୍ତ ଦେହରେ ଲୀନହୋଇ । ହୃଦୟପଦ୍ମ ମଧ୍ୟେ ରହି ॥
ଅତି ଆନନ୍ଦେ ବଜେ ଜର । ଦେବୀକୃଷ୍ଣ ଉଦ୍ଧବ ପାଶୋର ॥
ସୁଦାମପ୍ରେମେ ଅମ୍ଭେ ପଡ଼ି । ଏଣୁ ଗୋବିନ୍ଦ ଗଲେ ଛାଡ଼ି ॥
ରାଧା ଗୋପୀଙ୍କ ଅନୁରାଗେ । ମୁନି କହିଲେ ରାଜାଆଗେ ॥
ଜ୍ଞାନ ବୋଲନ୍ତି ମନ ଶୁଣ । ନିଷ୍କାମପ୍ରେମ ଏ କଥନ ॥
ଏ ଭାବେ ଥିଲେ ଅବଧୂତ । ନିଷ୍କାମଭକ୍ତି-ପ୍ରେମଯୁକ୍ତ ॥
ଇତି ଶ୍ରୀ ପ୍ରେମପଞ୍ଚାମୃତ । ଭକ୍ତିବିଭେଦ ଭାଗବତ ॥
କୃଷ୍ଣ ଚରଣେ ଦେଇ ମତି । ଭଣଇ ସୁଜନ ଭୂପତି ॥

ଇତି ଶ୍ରୀ ପ୍ରେମପଞ୍ଚାମୃତେ ଭକ୍ତିବିଭେଦ ଭାଗବତେ ମନଜ୍ଞାନ ଶୁକ ପରୀକ୍ଷିତ ସମ୍ବାଦେ ରାଧା ଗୋପୀ ନିଷ୍କାମଭକ୍ତି କଥନେ ନାମ ଚତୁର୍ଥୋଽଧ୍ୟାୟଃ ।

---

## ପଞ୍ଚମ ଅଧ୍ୟାୟ ।

ଜ୍ଞାନ ବୋଲନ୍ତି ମନ ଶୁଣ । ଶ୍ରୀ ଶୁକଦେବଙ୍କ ବଚନ ॥
କହନ୍ତି ଶୁଣ ନୃପମଣି । ବର୍ଣ୍ଣନ ସକଳ ଗୋପିନୀ ॥
ସମେ ହୋଇଲେ ଏକଭାଗ । ଶୋଭିଲେ ବନ ଏକଦେଶ ॥
ପୂର୍ବେ ଯେ ବ୍ରଜାଙ୍ଗନା ସଖି । ପଶ୍ଚିମ ଦିଗେ ମୁନିଅଂଶୀ ॥
ଉତ୍ତରେ ଅମର ଦୁହିତା । ଦକ୍ଷିଣେ ନିଗମ ବନିତା ॥
ଯେ ଯହା ଭାବ ଅନୁସାରେ । କୃଷ୍ଣଙ୍କୁ ଭଜନ୍ତି ବନରେ ॥

ଚତୁର୍ଥ ଦଶା ବରବର । ଶୁଣ ଉଚ୍ଚାର ଉଚ୍ଚସ୍ୱର ॥
ବେଦ କନ୍ୟାଏ ବଟେ ଭର । ଯେ ଜନ ଶବ୍ଦ ସ୍ୱମର ॥
ଜ୍ଞାନ ପାଇଲେ ଯାଉ ଭ୍ରମ । ଜାଣିଲେ କୃଷ୍ଣ ପୂର୍ଣ୍ଣବ୍ରହ୍ମ ॥
ଅମ୍ଭେ ସକଳ ବେଦ ଅଂଶୀ । ଶ୍ରୀକୃଷ୍ଣ ଗୋଲକବାସୀ ॥
ଚେତିଲେ କୃଷ୍ଣଙ୍କୁ ଚେତାଇ । ଭାବିଲେ ବେଦାନ୍ତ ନିଶାଇ ॥
କୃଷ୍ଣର ଦେବେ ସେ କାମିନୀ । ବେଦାନ୍ତମତ ତତ୍ତ୍ୱଜ୍ଞାନୀ ॥
ସ୍ୱଚରେ ଶୁଣ ନୃପଗଣ । ଯେ ବେଦ କନ୍ୟଙ୍କ ବଚନ ॥
ଯେ ନିତ୍ୟ ସତ୍ୟ ତତ୍ତ୍ୱ ଅଜ । ସଚ୍ଚିଦାନନ୍ଦ ବ୍ରହ୍ମବୀଜ ॥
ଯେ ନିରଞ୍ଜନ ନିରାକାର । ନିରବଲମ୍ବ ନିରାଧାର ॥
ତୋହର ଆଦ ଅନ୍ତ ନାହିଁ । ନୂତନ ପୁରାତନ ନାହିଁ ॥
ବାଲ ଯୁବାଙ୍କ ସ୍ଥୈର୍ଯ୍ୟ ବୃଦ୍ଧ । ତୋହର ଯହିଁ ଜନ୍ମ ବଧ ॥
ଦୀର୍ଘ ବା ହ୍ରସ୍ୱ ସ୍ଥୂଳ କ୍ଷୀଣ । ଉଚ୍ଚ ବା ନୀଚ ମଧ୍ୟମାନ ॥
ତୁ ନୋହୁ ଅଲପ ବହୁତ । ଅବ୍ୟକ୍ତ ଅପୂର୍ବ ଅଦ୍ଭୁତ ॥
ଶ୍ୱେତ ଅଶ୍ୱେତ ପୀତାରୁଣ । ତୋହର ନାହିଁ ବର୍ଣ୍ଣ ଚିହ୍ନ ୧୦ ॥
ତୋରେ ନ ଦେଖଇ ନୟନ । ଶୁଣି ନ ପାରଇ ଶ୍ରବଣ ॥
ଜିହ୍ୱା ନ ପାରଇ ବଖାଣି । ମନ ନ ପାରେ ଅନୁମାନି ॥
ତୁ ବର୍ଣ୍ଣ ବେଦକୁ ବାହାର । ସ୍ଥୂଳ ଶୂନ୍ୟରୁ ଅଭ୍ୟନ୍ତର ॥
ତୁ ଦଶଦଗରେ ସମାନ । ଅଚ୍ଛିଦ୍ର ସର୍ବାଙ୍ଗ ସମ୍ପୂର୍ଣ୍ଣ ॥
ସକଳସ୍ଥାନ ମଧ୍ୟେ ତୋର । ଦେବତ ଅମୂଲ୍ୟ ଅପାର ॥
ତୋ ମଧ୍ୟେ ଅଶେଷ ସଂସାର । ତୁ ନୋହୁ ବାହାର ଭିତର ॥
ବ୍ରହ୍ମାଣ୍ଡ ଅନ୍ତର ବାହାରେ । ଅଚଳ ଜଳ ପବନରେ ॥
ଖୋଜିବା ତୋ ନ ଥିବା ସ୍ଥାନ । ଜୀବ ଅଜୀବ ସ୍ଥୂଳ ଶୂନ୍ୟ ॥
ତ୍ରିଗୁଣ ତ୍ରିବେଦ ତ୍ରିସ୍ୱର । ଅନନ୍ତା ଶକ୍ତି ଏ ତୋହର ॥

ମୋର ଅନନ୍ତା ଶକ୍ତି କର୍ମ । କର୍ମେ ବ୍ରହ୍ମାଦି ଦେବେ ଭ୍ରମ ।।
କର୍ମେ ଅଧୀନ ଏ ଜଗତ । କର୍ମର ପଥେ ଅବତାର ।।
ଉତ୍ପତ୍ତି ସ୍ଥିତି ସୃଷ୍ଟି କ୍ଷୟ । ଏ ସବୁ କଥା କର୍ମ ମୟ ।।
କାମ୍ୟ କରନ୍ତ ମନେ ଧରି । ଏ ଭକ୍ତ ପଥେ କର୍ମ କରି ।।
ଏ ଭକ୍ତ ପଥେ ଅଗୋଚର । ଏଣୁ ତୁ କର୍ମରୁ ବାହାର ।।
କର୍ମ ନ ପାରେ ମୋରେ ଛୁଇଁ । ଜଳେ ନ ଭିଜେ ଯେସନେ ଘଇ ।।
କର୍ମ ସେ ଦେହର ଅଧୀନ । ତୁ ଥାଉ କର୍ମ ବନ୍ଧୁଁ ଭିନ୍ନ ।।
କର୍ମ କେବଳ ମୋର ମାୟା । ଦେହୁଁ ଜନ୍ମଇ ଯେସନେ ଛାୟା ।।
ଦେହର ରହିଁ ଶମ ଯାହିଁ । ଏରୂପେ ସୃଷ୍ଟି ମୋର ରହିଁ ।।
ଜଣାଏ ଅବତାର ପ୍ରସ୍ତେ । ଅନେକେ ଉତ୍ପତ୍ତି ପ୍ରଳୟେ ।।
ସ୍ଥିତି ଅଶେଷ ସଂସାର । ଏମନ୍ତ ମହିମା ମୋହର ।।
ମୋର ତୁଳନା ଅନ୍ୟ ତୁହି । ଆନ ଉପମା ମୋର ନାହିଁ ।।
ବାସନା ବାସୁଦେବ କହି । ଏ ଅନୁମାନ ନ ଘଟଇ ।।
କର୍ପୂର କସ୍ତୁରୀ ଚନ୍ଦନ । ବିବିଧ ଫଳ ଫୁଲମାନ ।।
ଏହାଙ୍କ ମଧ୍ୟେ ଥାଇ ବାସ । ଅଦୃଷ୍ଟି ପ୍ରତ୍ୟକ୍ଷେ ପ୍ରକାଶ ।।
ବାସନା ଅବଲମ୍ବେ ଥାଇ । ପବନ ସଙ୍ଗେ ଚଳଇ ।।
ଏଣୁ ଏ ବାସନା ଦୃଷ୍ଟର । ମୋଠେ ନୁହଇ ପଟାନ୍ତର ।।
ରବି ଶଶାଙ୍କ ଅଗ୍ନି ମଣି । ତାରା ଜଡିତ ଜ୍ୟୋତି ଗଣି ।।
ଜ୍ୟୋତି ଏ ଅବଲମ୍ବେ ଥାନ୍ତି । ଉଦୟ ଅସ୍ତ ସେ ହୁଅନ୍ତି ।।
ଏଣୁ ଏ ଜ୍ୟୋତିର ଦୃଷ୍ଟର । ନୁହଇ ଉପମା ମୋହର ।।
ପ୍ରାଣ ଯେ ଥାଇ ପିଣ୍ଡସଙ୍ଗେ । ଅଛାଦି ପ୍ରଭୁ ଅଙ୍ଗେ ସଙ୍ଗେ ।।
ଶରବଧନ ପ୍ରାପ୍ତ ହୋଇ । ପିଣ୍ଡ ଉହାଡ଼େ ପ୍ରାଣ ଥାଇ ।।
ପବନ ସଙ୍ଗତେ ଚଳଇ । ପ୍ରାଣ ପରମ ଏକ ହୋଇ ।।

ତାର ତତ୍ତ୍ୱ ସର୍ବ ଧର୍ମ । ନାଟୀର ପ୍ରାୟେ ପିଣ୍ଡ ଭ୍ରମ ।
ଏ ଆତ୍ମା ଧର୍ମ ବନ୍ଧ ହେଉ । ତାହାର ଘଟେ ସଞ୍ଚରଇ ।
ଜୀବ ପରମ ତେଜ ଅଂଶ । ଏ ବନ୍ଧ ମୁକ୍ତିରେ ପ୍ରବେଶ ।
ତୋହର ବନ୍ଧ ମୁକ୍ତି ନାହିଁ । ଚଳ ପ୍ରଚଳ ଅବା ନାହିଁ ।
ଏଣୁ ଏ ଆତ୍ମାର ବନ୍ଧନ । ତୋତେ ନୁହଇ ଘଟାନ୍ତର ।
ମତ୍ସ୍ୟାଦି ଅବତାରମାନ । ଏଥିରୁ ଉଦ୍ଭବ ଭଗବାନ ।
ସତ୍ତ୍ୱ ଯେବେ ରଣେ ଯାଇ । ଶରୀରେ ଜନମ ଘାଇଲ ।
ମଂଗ୍ରାମେ ଖଡ୍ଗ ଖପ୍ପ ଧର । ହବତ ବେଗେ ପରହର ।
ଜଳଚ ଦୋଳେ ବା ଶରୀର । ଏରୂପେ ତୋର ଅବତାର ।୬୦।
ଯେବେ ବୋଲିବା ଶୂନ୍ୟ ପ୍ରାୟେ । ବ୍ୟାପି ରହିଛୁ ସର୍ବଠାଏ ।
ଦଶ ଦିଗରେ ସମସର । ବାହ୍ୟ ଅଭ୍ୟନ୍ତରରେ ପୂର ।
ଅନାଦି ଅନନ୍ତ ଅପାର । ଶୂନ୍ୟ ଅବ୍ୟୟ ନିରାକାର ।
ନାରୂପ ଅଲେଖ ଅଟଳ । ଶୂନ୍ୟକୁ ତାଳ ନ ହୋଇଲ ।
ତୋ ଗୁଣ ସବୁ ଶୂନ୍ୟେ ଲେଟେ । କେବଳ ନଥାଏ ନ ଘଟେ ।
ଶୂନ୍ୟର ଅସ୍ତି ନାସ୍ତି ନାହିଁ । ଏଣୁ ତୋ ତୁଳନା ନୁହଇ ।
ନାସ୍ତିରେ ତୋର ଅସ୍ତି ଅଛି । ନାସ୍ତି ନ ତୋର ତୁଲେ ଅଛି ।
ଏଣୁ ଏ ଶୂନ୍ୟର ଦଶର । ନୁହଇ ସମାନ ତୋହର ।
ସଚ୍ଚିଦାନନ୍ଦ କହେ ବେଦ । ଏଣୁ ନ ଜାଣେ ତୋର ଭେଦ ।
ପ୍ରାଣ ଯେସନେ ପିଣ୍ଡେ ଥାଇ । ପିଣ୍ଡ ଚାହାନ୍ତୁ ନ ଦେଖଇ ॥୭୦॥
ଏରୂପେ ବେଦ ମନ୍ତ୍ର କହି । ବେଦ ନ ଜାଣେ ତୋର ମର୍ମ ।
ଏଣୁ ଏ ବେଦର ବଖର । ପଞ୍ଚାଶ ବର୍ଣ୍ଣର ଉଦର ।
ବର୍ଣ୍ଣରୁ ମଂହା ଉଦ୍ଭବ ତର । କହି ନ ପାରଇ ଉଚ୍ଚାର ।
ନାନା ପ୍ରକାରେ ବେଦ ଭେଦେ । ପଞ୍ଚାଶବର୍ଣ୍ଣେ ସବୁ ମିଶେ ।

ବର୍ତ୍ତି ତାହାରେ ବ୍ରହ୍ମ ରହି । ଏଣୁ ତ ଯାରେ ବେଦ କହି ॥
ସଚ୍ଚିଦାନନ୍ଦ ଭାବ ଘନ । ଦେହ ଆତ୍ମାରେ ଅନୁମାନ ॥
ଯେଠାରେ ଦେହ ଆତ୍ମା ନାହିଁ । ସଚ୍ଚିଦାନନ୍ଦ ଭାବଗ୍ରାହୀ ॥
ଏଣୁ ସଚ୍ଚିଦାନନ୍ଦ ଭାବ । ଏଥି କି ଅନେକ ଦୁର୍ଲଭ ॥
ଶବ୍ଦ ବ୍ରହ୍ମ ତୋର ନାମ । ସେ ନିତ୍ୟ ସତ୍ୟ ନିରୁପମ ॥
ତାହୁଁ ଝୁରଇ କେବା ଝୁରେ । ନିରବଲମ୍ବ ନିରାଧାରେ ॥
ସେ ନାଦ ଅନ୍ତର ବାହାରେ । ସମାନ ଦଶ ଦିଗନ୍ତରେ ॥
ଅବ୍ୟୟ ନାଦ ଅନାହତ । ସର୍ବଦା ଶୁଣେ ଏକମନ ॥
ଅବର୍ତ୍ତି ଅବକାଶ ଧ୍ୱନି । କର୍ଣ୍ଣ ମୁଦିଲେ ତାହା ଶୁଣି ॥
ଅନାଦି ଅନନ୍ତ ସେ ନାଦ । ତାହାକୁ ନ ଲାଗେ ପ୍ରମାଦ ॥
ପ୍ରଳୟ ସୃଷ୍ଟି ସ୍ଥିତି କ୍ଷୟ । ତୋ ନାମ ନାଦରୁ ଉଦୟ ॥
ବ୍ରହ୍ମାଣ୍ଡ ଦେବାରୁ ନକଳ । ତୋ ନାମ ବଦନ ନିର୍ଝର ॥
ଯେସନେ ଶିଶିର ପ୍ରବେଶେ । ନୀହାର ଆକାଶରୁ ଖସେ ॥
କାରୁଣ୍ୟ ସିନ୍ଧୁପୂର୍ତ୍ତି ହେଲେ । ତୋ ନାମ ଅମୃତ ନ ଗଲେ ॥
ଯେସନେ ଗ୍ରୀଷ୍ମ ରବିକର । ଗଗନୁ ନ ପଡ଼େ ତୁଷାର ॥
ସେ ଯେ କାରୁଣ୍ୟ ମହାନୀର । ନବଦ୍ୱୀପରେ ନାହିଁ ଆର ।୯୦।
ବ୍ରହ୍ମା ଅଯୁତ ଦେହ ବହି । ମନନ୍ତୁ ବେଗ ଯେବେ ଯାଇ ॥
ନ ପାଇ ତାର ସ୍ଥୂଳ କୂଳ । ଏରୂପେ ସେ କାରୁଣ୍ୟଜଳ ॥
ସେ ଜଳେ ଅବା ନାମପୂର୍ଣ୍ଣ । ନାମ ବ୍ରହ୍ମରୁ ଉତପନ୍ନ ॥
ଚୁମ୍ବକ ଲୌହ ପ୍ରାପ୍ତ ହୋଇ । ସେ ନାନା ଅବଲମ୍ବେ ଥାଇ ॥
ଯେସନେ ତୋ'ର ବେଣୁସ୍ୱନ । ନାଦିତ ହୁଅଇ ଉଜାଣ ॥
ପବନ ହୁଅଇ ସ୍ଥାବର । ଜୀବ ଅଜୀବ ବିପଯ୍ୟର ॥
ପାଷାଣ ଦ୍ରବ ହୋଇ ବହେ । ଦ୍ରବ ପାଷାଣ ପ୍ରାୟ ରହେ ॥

ଲଭେ ତୋର ନାଦ ସ୍ୱନ । ହିରଣ୍ୟସିନ୍ଧୁରୁ ପ୍ରମତ ।
ଯାହାରୁ ସେସଟେ ଅଙ୍କୁର । ଜନ୍ମି ଜନ୍ମଇ ବାସେଶ୍ୱର
ଅଶେଷ ଅନଳଙ୍କ ଫଣୀ । ସେ ନାଗ ଦେହଜ୍ୟୋତି ବଶି ।
ଅଛନ୍ତି ଭୁଜଙ୍ଗ କଳେବର । ବ୍ରହ୍ମାଦି ଦେବେ ଅଗୋଚର ।
ନାମ ଅନନ୍ତ ଅହିରାଜ । ସହସ୍ର ଫଣା ମଣିତେଜ ।
ଅନେକ ଆଦିତ୍ୟର ଜ୍ୟୋତି । ଏକେ ଏକେ ମଣି ଝଟକନ୍ତି ।
ସେ ମଣି ମାଣିକ୍ୟ କିରଣ । ପ୍ରକାଶେ ଅଶେଷ ଯୋଜନ ।
ସେ ଜ୍ୟୋତି ଯୋଗିଙ୍କର ଲକ୍ଷ୍ୟ । ଯୋଗୀ ଦେଖନ୍ତି ଜ୍ୟୋତିର୍ମୟ
ଏଣୁଟି ଯୋଗିଙ୍କର ଯେତେ । ବୋଲନ୍ତି ଜ୍ୟୋତିରୂପ ତୋତେ ।
ତୋ ନାମ ଅନାହତ ଧ୍ୱନି । ସେ ନାଦ ନେତ୍ରପଥେ ଶୁଣି ।
ଏଣୁ ଜାଣନ୍ତି ସେ ପୁରୁଷ । ଅଶେଷ ଯୋଗିଙ୍କର ଈଶ ।
ସଚ୍ଚିଦାନନ୍ଦ ମନ ଦେହ । ସହସ୍ରେ ଫଣା ଟେକି ଥାଇ ।
ଏ ଦେହେ ଯେତେ ଜାତି ନାଗ । ସର୍ବ ଦେବଙ୍କୁ ଅନୁରାଗ ।୧୧୦।
ଅନନ୍ତ ନିଶ୍ୱାସ ସମୀର । ତରଙ୍ଗଧର ଏ ସାଗର ।
ତରଙ୍ଗ ମଧ୍ୟେ ଜାତ ହୋଇ । ତାହାକୁ ମହାବିଷ୍ଣୁ କହି ।
ସେ ମହାବିଷ୍ଣୁ କଳେବର । ବ୍ରହ୍ମାଦି ଦେବେ ଅଗୋଚର ।
ଅନନ୍ତ ନାଭିହୋଲେ ଯାଇ । ସେ ମହାବିଷ୍ଣୁ ସ୍ମରଣେ ଥାଇ ।
ତାହାଙ୍କ ଶେଷ ନାଗଶେଷ । ସେ ଯୋଗନିଦ୍ରାରେ ଅବେଶ ।
ନାଦ ଶବଦେ ଦେଇ ମନ । ସେ ବିଷ୍ଣୁ ଧରନ୍ତି ଶସ୍ୱନ ।
ସ୍ୱପ୍ନ ବେଳହାଲ ଜାଣି । ଉଣ୍ଠି ଜନ୍ମିଲେ ହିରଣୁଣୀ ।
ପଦ୍ମିନୀ ରୁକ୍ମିଣୀ ସେ ହେନ । ସପତ ଶୃଙ୍ଗାରକୁ ସେନ ।
ନାମ ଯେ ଲକ୍ଷ୍ମୀ ସରସୁଗ । ସେ ବିଷ୍ଣୁ ଚରଣେ ସେବନ୍ତି ।
ସ୍ୱପ୍ନେ ବିଷ୍ଣୁ ଅଚେତନ । ନାଭିରୁ ଜନ୍ମିଲା କମଳ ।

ଅଶେଷ ଚୈତନ୍ୟ ହୋଇ । ଜଗତେ ବଢ଼ି ଯାଉଥାଇ ॥
ତେବେହେଁ ନାଗଫଣାଯାଏ । ସେ ପଦ୍ମ ତେବେହେଁ ନ ଯାଏ ॥
ଫଣାର ତଳେ ଅଉଦୂରେ । ଫୁଟଇ ଅଶେଷ ଦଳରେ ॥
ତହିଁ ସହସ୍ରଦଳ ସାର । ତା ମଧ୍ୟେ ଷୋଡ଼ଶ ଦଳର ॥
ଷୋଡ଼ଶେ ସାର ଅଷ୍ଟଦଳ । କର୍ଣ୍ଣିକା କେଶର ଅମୂଲ୍ୟ ॥
କେଶର ମଧ୍ୟେ କଳ୍ପ ବୃକ୍ଷ । ମଣିମଣ୍ଡପ ସୁପ୍ରତ୍ୟକ୍ଷ ॥
ମଣ୍ଡପମଧ୍ୟେ ରତ୍ନବେଦୀ । ସେ ଚନ୍ଦ୍ର ମଣିରେ ଅଛାଦି ॥
ବେଦୀ ଉପରେ ସିଂହାସନ । ସେ ପଦ୍ମରାଗ ସୁଗଠନ ॥
ସିଂହାସନର ପ୍ରଭା ବଳେ । ଚନ୍ଦ୍ରମଣ୍ଡଳ ପ୍ରଭା ନ ସେ ॥
ମଧ୍ୟରେ ସିଂହାସନ କାନ୍ତି । ଊର୍ଦ୍ଧ୍ୱମ ଅଗ୍ନି ପ୍ରାପ୍ତ ଜ୍ୟୋତି ୧୩୦
ଜ୍ୟୋତିର ମଧ୍ୟେ ସୁଶୋଭନ । ବତଶ ସୁବର୍ଣ୍ଣ ଆସନ ॥
ସେ କଳ୍ପବୃକ୍ଷ ଆଚ୍ଛାଦନ । ସମତା ଚଉର ଯୋଜନ ॥
ପ୍ରଷ୍ଟବ ନୀଳମଣି ଅଗ୍ର । ପଞ୍ଚବର୍ଣ୍ଣରେ ଫୁଲ ଶୋଭା ॥
ଗଜମୁକ୍ତା ଝୁମ୍ପାମାଳ । ସୁବର୍ଣ୍ଣ ସଦୃଶ ବକଳ ॥
ମଞ୍ଜି ତା ରତ୍ନକର ବାସ । ଝରଇ ପୁଷ୍ପରଜ ରସ ॥
ଦେଖି କୋକିଳ ଶୁକ ଶାରୀ । ମତ୍ତ ମୟୂର ନାଦ କରି ॥
ହଂସ ହଂସାଳି ରତିବାଦ । ଡାହୁକ ରଚନାର ଶବଦ ॥
ଏମନ୍ତେ ନାନାପକ୍ଷୀ ନାଦ । ଶୁଣନ୍ତେ ବଢ଼ଇ ଆନନ୍ଦ ॥
ଦ୍ୱାଦଶ ବୃନ୍ଦାବନ ଭେଦ । ବଦେ ନାଗରୀ ନାମେ ଦସ ॥
ଶ୍ୟାମ ରାଧିକା କେଳି କୁଣ୍ଡ । ଯହିଁ ପାଲଟେ ନିଜ ପିଣ୍ଡ ॥
ବ୍ରହ୍ମାଦି ରୁଦ୍ର କୁଣ୍ଡ ଯହିଁ । ଶୁଦ୍ଧ ସନକାଦି ସେ ରହିଁ ॥
ତା ମଧ୍ୟେ ସପ୍ତ ଆବରଣ । ନବମ ଭେଦ ବସ୍ତୁରଣ ॥
ଅଶେଷ ଲୀଳା ତହିଁ ଯୁତ । ସବେଦ ପାଶୋରଲୁ ବର

ମୋର ଗୋଲକ ପଦ୍ମତଳେ । ଜଳଧା ଅଛହିଁ ସତଳେ ॥
ଅଶେଷ ପଦ୍ମ ତହିଁ ଫୁଟି । ବଢ଼ିଛେ ବ୍ରହ୍ମା କୋଟି କୋଟି ॥
ବ୍ରହ୍ମାଙ୍କେ ଏହିଁକ ଜଗତ । ଏରୂପେ ସୃଷ୍ଟି ଅପ୍ରମିତ ॥
ଯେସନେ ଘଟ ତୋଷଣାସି । ଘଟନେ ଏତ ତୋଷ ହଉ ॥
ସେ ଘଟକୋଷ ନୃତେ ଚର । ବ୍ରହ୍ମା ବ୍ରହ୍ମାଣ୍ଡ ଏ ପ୍ରକାର ॥
ପଦ୍ମରୁ ବ୍ରହ୍ମା ଜାତ ହୋଇ । ଉଦାସ ମନେ ବସୁରଇ ॥
ତାଙ୍କୁ ଅଇଲ ହେବା ମୁହିଁ । ମୋହର ଜନ୍ମଦାତା ଚାହିଁ ॥
ଏହା ଚିନ୍ତଇ ଦେଖାଲେ । ଉଦପଡ଼ିଲା ନିମ୍ନଜଳେ ॥
ଅନେକ ଦିନ ଜଳେ ଯାଇ । ବିମୁଖ ହୋଇ ଲେଉଟଇ ॥
ପୁଣି ବସିଲ ପଦ୍ମ ପତ୍ରେ । ତତ୍ତ୍ୱ ଚିନ୍ତେଯଇ ଶୂନ୍ୟରେ ॥
ଶୂନ୍ୟେ ମୋହର ନାମ ଧ୍ୱନି । ଅଷ୍ଟ ଶ୍ରବଣେ ତାହା ଶୁଣି ॥
ବସିଲ କରିଲ ମନର । ଦେ ସାଙ୍ଗ ଦେବଣ ଅକ୍ଷର ॥
ବୁଝି ନ ପାର ବ୍ରହ୍ମା ତାହା । ସେ ପରଂବ୍ରହ୍ମ ସୁଅ ସାହା ॥
ଏମନ୍ତ ମନେ ମନେ ଗୁଣି । ଓଁ ନାଦ ବୋଲି ଅନୁମାନି ॥
ଓଁ ନାଦ ଦୃଢ଼ ଦେଲା ଚକ୍ରେ । ଉଗ୍ରତେଣ ବ୍ରହ୍ମାର ଅଗ୍ରରେ ॥
ଓଁ ନ ର ଅର୍ଦ୍ଧ ମାତ୍ରା ଶୂନ୍ୟ । ଦଶିଲେ ବ୍ରହ୍ମ ର ଲୋଚନ ॥
ଓଁ କାରରୂପ ବ୍ରହ୍ମା ଦେଖି । ପ୍ରାଣାମ ଦେଲା ଅଷ୍ଟଆଖି ।୧୬୦
ଓଁ କାର ଅକ୍ଷର ମାନତା । ପ୍ରକଟ ଗାୟତ୍ରୀ ମନ୍ତ୍ର ତା ॥
ଗାୟତ୍ରୀ ମନ୍ତ୍ର ବେଦ ମାତ । ବ୍ରହ୍ମାର ମଧ୍ୟ ବ୍ରହ୍ମତତ୍ତ୍ୱ ॥
ବ୍ରହ୍ମା ତା ଜପ ସ୍ମରଣ । ଉତ୍ତ୍ରେଣ ଘାଇ ଜଳ ଜ୍ଞାତ ॥
ମୁଁ ବ୍ରହ୍ମ ଉତ୍ତୋଗେଣେ ଭ୍ରମ । ସୃଷ୍ଟି ଉଅଣ ମୋର କର୍ମ ॥
ଏମନ୍ତ ଚିନ୍ତନ ମନର । ଜଗମ ଦେଲା ସେ ଉଚ୍ଚାର ॥
ଶୁଣ ନିଗମ ମୂର୍ତ୍ତିମନ୍ତେ । ଟଂଦଲେ ବ୍ରହ୍ମାର ଅଗ୍ରତେ ॥

ବ୍ରହ୍ମା ରଚନ୍ତି ଚତୁ ବେଦ । ପୁଣି ତୋ ନାମ ମଧେ ଗୁଣି ।
ଅଛି କଣ୍ଟଲେ ମନ ଦେଇ । ଶୁଣିଲା ଓଁ କାର ନୃହଇ ।
ତା ଗାଳ ଧର୍ମ ସିଦ୍ଧ ହେଲା । ତୋ ନାମ ବେଦ ନ ପଢ଼ିଲା ।
ଏଣୁଟି ମହିମା ତୋହର । ବ୍ରହ୍ମାଦି ଦେବେ ଅଗୋଚର ॥
ବ୍ରହ୍ମା ଏ ବେଦମନ୍ତ୍ରବଳେ । ସୃଷ୍ଟି କରନ୍ତି ଅବହେଳେ ।
ବିଷ୍ଣୁର ଲୋମ ଅଛି ଲକ୍ଷ । ଅଶେଷ ବ୍ରହ୍ମାଣ୍ଡର ସ୍ତମ୍ଭ ।
ସେ ବ୍ରହ୍ମା ବିଷ୍ଣୁଙ୍କ ନିଶ୍ୱାସ । ବ୍ରହ୍ମାଣ୍ଡ ବ୍ରହ୍ମାଙ୍କ ଅଯୁତ ।
ସେ କୃଷ୍ଣ କଳା-ଅବତଂଶ । ସେ ମହାବିଷ୍ଣୁ ତୋର ଅଂଶ ।
ତୁ ପରଂବ୍ରହ୍ମ ଅବିନାଶୀ । ଅମ୍ଭେ ତୋହର ନିଜ ଦାସୀ ।
ଏ ବ୍ରଜଭୂମି ବୃନ୍ଦାବନ । ଗୁପତେ ପ୍ରେମମନ୍ତ୍ର ସ୍ଥାନ ।
ଏ ପ୍ରେମ ମିଶି ତାହିଁ ଭସ୍ମ । ଏଣୁ ତୁ କରନ୍ତି ସଂଶୟ ।
ଏ ପ୍ରେମେ ତୋର ମୂଳ ଧନ । ଏ ପ୍ରେମ ଦାନେ ତୁ କୃପଣ ।
ଅମ୍ଭଙ୍କୁ ଦେବା ବିସ୍ମରୁଛୁ । ଏବେ କପଟେ ଲୁଚୁଅଛୁ ।
ଅମୂଲ୍ୟ ରତ୍ନ ଯେବେ ପାଇ । ଦେବାକୁ ସର ନ ବଳଇ ।
ଏବେ ତୁ ନ ଦେବା ବିଷୟ । ବୋଇଲା ବୋଲ ନ ସ୍ମରଇ ।
ତୁମ୍ଭେ ନ ସ୍ମରିଲ ଯେବେ । ଅମ୍ଭେ ଚେତାଇ ଦେଉଁ ଏବେ
ତାହାରୁ ଯେରୂପ ପ୍ରକାଶ । ମୋହିତ ମଦନ ଅଶେଷ ।
ଦ୍ୱିଭୁଜ କୃଷ୍ଣ ବେଣୁଧର । ନବଘନୋର ମନୋହର ।
ସଜଳ ନୀଳ ଘନଶ୍ୟାମ । ବଦନ ଅଞ୍ଜନ ଚିକ୍କଣ ।
ଶ୍ୟାମସୁନ୍ଦର ସୁଶୋଭିନା ଇନ୍ଦ୍ର ନୀଳମଣି ପ୍ରତିମା ।
ମୟୂରମୁକୁଟ ଶୋଭନ । ଗୁଞ୍ଜପୁଞ୍ଜ ଶୋଭାବନ ।
ଶ୍ରୀ ଗୋପୀଚନ୍ଦନ ତିଳକ । ବସ୍ତୁଷୋଡଶ ଅଳଙ୍କ ।
ଚଞ୍ଚଳ ମକର କୁଣ୍ଡଳ । ମଣ୍ଡିତ ଦିବ୍ୟ ଗଣ୍ଡସ୍ଥଳ ।

ଅରୁଣନେତ୍ର ପଦ୍ମଦଳ । ଖଞ୍ଜନଗଞ୍ଜନ ଚଞ୍ଚଳ ।
ନାସାରେ ଏକ ମୁକ୍ତାବଳେ । ଭାବ କି ଉଦେ ରବିପରେ ।
ରଙ୍ଗ ଅଧର ମନ୍ଦହାସେ । ପ୍ରବାଳ ମୁକ୍ତା ପ୍ରାପ୍ତ ଦଶେ ।
କଣ୍ଠେ କୌସ୍ତୁଭ ପଞ୍ଚରେଖ । ସୁଭଶ କୁଳୀ ବ୍ୟାଘ୍ରନଖ ।
ହୃଦେ ଶ୍ରୀବତ୍ସ ବନମାଳୀ । ତାହି ଉପ୍ପର ହେମାବଳୀ ।
ଡମ୍ବରୁ ମଧ୍ୟ ସିଂହଠାଣି । ଲଟେ ମେଖଳା ସୁକିଙ୍କିଣୀ ।
ପୀତପଟାମ୍ବର କାଛଣି । ଘନେ କି ସ୍ଥିର ଦାମିନୀ ।
ସୁବର୍ଣ୍ଣ ମଞ୍ଜୁଳ ମଞ୍ଜୀର । ହରଳ ଶବଦେ ମଧୁର ।
ନଖ ଚନ୍ଦ୍ରମା ସ୍ବଚ୍ଛ କାନ୍ତି । କିରଣ ପୂର୍ଣ୍ଣଚନ୍ଦ୍ର ଜ୍ୟୋତି ।
ଅରୁଣ ଅମ୍ବୁଜ ଚରଣ । ଶୋଭିତ ଅଷ୍ଟଚିହ୍ନ ଘନ ।
ସୁବର୍ଣ୍ଣ ରତ୍ନ ଏକେ ହର । ଅମୂଲ୍ୟ ଅଷ୍ଟ ଅଳଙ୍କାର ।
ହରଷ ଚନ୍ଦେ ଗା ଅର୍ଚ୍ଚିତ । ଶ୍ରୀଅଙ୍ଗେ ଚନ୍ଦନ ଚର୍ଚ୍ଚିତ ।
ନାନା ସୁଗନ୍ଧ ଦିବ୍ୟ ଫୁଲେ । ଲୋଲୁପେ ଭୃଙ୍ଗମାଳ ବୁଲେ ॥
ତାମ୍ବୂଳ ହର ଅଷ୍ଟଦଳ । ଅତି ସୁପ୍ରସନ୍ନ ବଦନ ।
ମଲ୍ଲିକୁଞ୍ଜର ଲୀଳାଗତି । ଲଜ୍ଜିତ କୋଟି ରତିପତି ।
କମଳ ରହିକନାଗର । ସୁନ୍ଦରଶ୍ୟାମ ନଟବର ।
ସଙ୍ଗୀତ ବାଦ୍ୟରେ ନୃତ୍ୟପ୍ରିୟ । ଅପ ବଂ ସୁରୁଷରବନ ।
ନ ମଥାଷ୍ଟର ବଡ଼ାଂଗୁରୁ । କାମିନୀକୁଳ କଳ୍ପତରୁ ।
ସବାଙ୍ଗ ଚତୁର ଚନ୍ଦ୍ରମା । ସକଳିଗୁଣେ ଅନୁପମା ।
ଧ୍ୟାନ ବିଧାନ ରୂପଧର । ବଂଶୀ ବିନୋଦ ନାଦ କର ।
ଗୋଲୋକବାଞ୍ଛା-ବୃକ୍ଷମୂଳେ । ମଣି ମଣ୍ଡପ ମଧ୍ୟସ୍ଥଳେ ।
ପାଦରେ ପାଦଛନ୍ଦ କେଲ । ତ୍ରିଭଙ୍ଗିଭଙ୍ଗେ ଉଭା ହୋଇ ।
ଅବଲମ୍ବନ କଳ୍ପତରୁ । ବଂଶୀ ବିନୋଦ ନାଦ କରୁ ।

ପ୍ରଥମ ବଂଶୀ ଉଚ୍ଚାଟନ । ପ୍ରକାଶେ ବେଦକନ୍ୟାଗଣ ॥
ସ୍ତମ୍ଭନ ବଂଶୀନାଦ ଶୁଣି । ଉଦତ ଦେବରାଜଧ୍ୱନି ॥
ବଶୀକରଣନାଦ ବଂଶୀ । ଚନ୍ଦ୍ରଂ ଜନ୍ମିଲେ ମୁନିଅଂଶୀ ॥
ମୋହନ ନାଦ ଯେ ମୁରଲୀ । ଚନ୍ଦ୍ରଂ ହବର ବ୍ରଜବାଳୀ ॥
କନ୍ୟାଙ୍କ ଜନ୍ମ ଏ ପ୍ରକାର । ଷୋଳ ସହସ୍ର ଚତୁର୍ବ୍ବର୍ଣ ।
ବେଶ ବସ୍ତ୍ର ମନୋହର । ସର୍ବାଙ୍ଗ ସୁଗନ୍ଧ ସୁନ୍ଦର ।
ଦେଖି କାମିନୀ ବୃନ୍ଦବୃନ୍ଦ । ତୋ ମନେ ବଢିଲା ଆନନ୍ଦ ॥
ଯେସନେ ଗାଳ ବେଣୁଥାଳ । ଏକ ରୁ ପ୍ରକାଶ ଯୁଗଳ ।୨୨୦॥
ତୋହର ଜୀବଆତ୍ମା ସେଠେ । ପରମ ମିଶି ତାର ମଧ୍ୟେ ।
ଦ୍ୱି ଅର୍ଦ୍ଧେ ଏକ ପୂର୍ଣ୍ଣହେଲ । ଏଣୁ ସେ ଏକ ଅଙ୍ଗ ହୁଇ ॥
ଜୀବ ପରମ ଅଂଶ ବେନି । ଯୋଗ ସଂଯୋଗେ ଭବ ଗଣି ।
ତୋ ଦେହଶ୍ରୀରୁ ପ୍ରକାଶ । ହୁଅନ୍ତି ଗୋପାଳ ଦ୍ୱାଦଶ ।।
ଗୋପାଳଦେହରୁ ଅନେକ । ସମ୍ଭୂତ ଶ୍ରୀବ୍ରଜବାଳକ ।
କାଳକ ବସ୍ତ୍ରାଏ ପ୍ରତ୍ୟକ୍ଷ । ଗୋଷ୍ଠୁ ଗୋପାଳ ଲକ୍ଷ ଲକ୍ଷ ॥
ସୁଖବାସରେ ଚତୁର୍ଦ୍ଦଶ । ଦ୍ୱିଅକ୍ଷୁ ଜନ୍ମଲ କଟାକ୍ଷ ।
କଟାକ୍ଷୁ କାମ ପ୍ରେମ ଜାତ । ସୁରଭିରସେ ବଢେ ତତ୍ତ୍ୱ ।
ତବା ମୃଦଙ୍ଗ ବୀଣା ତାଳ । ବିବିଧ ବାଦ୍ୟ ସୁରଥାଳ ।
ସଙ୍ଗୀତ ବିଦ୍ୟା ନୃତ୍ୟଗୀତ । ନାନା ବିନୋଦ ରଙ୍ଗେ ରତ ।
ତୁ ରସେଥିଲୁ ସପରସେ । ସମସ୍ତେ ଖଟିଥିଲୁଁ ପାଶେ ।
ନାନା ବିନୋଦ ଅଭିଳାଷେ । ରହସ୍ୟ ହାସ୍ୟ ପରିହାସେ ।
ଆମ୍ଭେ ଯେ ସ୍ୱନନ୍ଦନ୍ୟାଗଣେ । ସମସ୍ତେ ଥିଲୁଁ ବଦ୍ୟମାନେ ।
ଏହାଙ୍କ ମଧ୍ୟେ ତୁମ୍ଭେ ଥାଇ । ବିରହ ବିହାର ଦେଖାଇ ।
ସର୍ବାଙ୍ଗେ ପୁଲକ ପୂରିତ । ଅରୁଣ ନେତ୍ର ଅଶ୍ରୁ ଯୁକ୍ତ ।

ଊର୍ଦ୍ଧ୍ୱ ନିଶ୍ୱାସ ସଘନ । ଲୁଣ୍ଠିତ ଗଦ୍‌ଗଦ ବଚନ ।
ଅଧର କମ୍ପ ଉନମାଦ । ଉଦାସ ହରଷ ବିଷାଦ ।
ମୂହୁ ଚଃଚକ୍ଷେ ସ୍ତମ୍ଭୀଭୂତ । କ୍ଷଣକେ ହେଉ ଯେ ମୂର୍ଚ୍ଛିତ ।
ହାସ୍ୟ ରୋଦନ ମିଶାମିଶି । ଏ ଭାବେ ଭୋର ହେବେ ବସି ।
ସମସ୍ତେ ହୋଇଲୁଁ ଚକିତ । ଏ ଲୋକେ ଏହ ବିପରୀତ ।
ଏ ଜନେ ଅଇଶ୍ୱର୍ଯ୍ୟ ସୁଖ । ଏଠାରେ ନାହିଁ ଦୁଃଖ ସୁଖ ।
ଏମନ୍ତ ବୋଲି ଏକମେଳେ । ପଡିଲୁଁ ଭୋର ପାଦତଳେ ।
ବୋଇଲୁଁ ନାହାର ବରଦେ । ବିଚାର ପ୍ରକାଶିଲୁ ଦେବେ ।
ଏ କଥା କହ ତୁ ବହନ । ହୋଇଲେ ରକ୍ଷିତ ଜୀବନ ।
ତୋହର ଏ ଦମୂକ୍ଷ ଦେଖି । ଜୀବନ ନ ରହୁଛି ରକ୍ଷି ।
ବେଗେ କହନ୍ତୁ ହର ତାପ । ହୋଇଲେ ଛାଡ ଅମ୍ଭ ଅପ ।
ତା ଶୁଣି ଧଇର୍ଯ୍ୟ ଧଇଲୁ । ସବୁଙ୍କୁ ଭୁଜ କସଇଲୁ ।
ଯେ ଅଶ୍ରୁ ସଖୀଙ୍କ ଲୋଚନେ । ପୋଛିଲୁ ତୋ ଛନ୍ନ ବସନେ ।
ସୁଧିକା ଅଣି ପାନ ଜଳ । ଧୋଇଲ ତୋ ମୁଖକମଳ ।
ପୋଛିଲେ ଛିଡିବ ସ ଘେନ । ଅଧ ବଷ ଦେ ଠାକୁରାଣୀ ।
ସବୁଙ୍କୁ କହ ଶାନ୍ତ ହିତ । ବୋଇଲୁ ଶୁଣ ଏ ବୃତ୍ତାନ୍ତ ।
ଏ ଯେ ଶୃଙ୍ଗାରରସ ସାର । କହିଲେ ଏ ଗୂଢ ପ୍ରକାର ।
ସ୍ୱକିୟା ସମାନ ବଟଣି । ଚତୁର୍ଥେ ଶୁଦ୍ଧପ୍ରେମାରୂପୀ ।
ପ୍ରକିୟା ରସଭେଦ ହୁଇ । ଅନ୍ତର୍ଗୀ ଶୁଦ୍ଧପ୍ରେମା ହୋଇ ।
ଶୁଣ ଏ ସ୍ୱଦଙ୍କ ପ୍ରକାର । ଯେ ଯେଉଁ ପ୍ରଭୁରେ ପ୍ରବଳ ।
ସ୍ୱକିୟା ସ୍ୱଭକ୍ତର ଦାସୀ । ରାହାଙ୍କୁ ଅଣି ହଲ୍ଲ ଦଇ ।
ଏହି ଜର୍ଜଳ ପ୍ରେମଦତ୍ତା । ଦଇବଯୋଗେ ସିନା ହତ୍ୟା ।
ନର ଚକ୍ଷ୍ୟାର ନ ଅପୂର୍ବ । ସେ ତୁଳାସ୍ତର ବକ୍ଷସ୍ତର ।

ଔଷଧ ଯେସନେ ନ ରୁଚଇ । ବ୍ୟାଧି ସଂଯୋଗବଲେ ଖାଇ ।
ଏରୂପେ ପ୍ରେମ ଜନ୍ମାଇଲ । ଅବା ମିଳଇ ପରସ୍ପର ।
ଲଜ୍ଜା ଏହାର ମୂଳଧନ । ଏ କୁଳବଧୂଙ୍କ ଲକ୍ଷଣ ।
ଏଥିରେ କି ପ୍ରେମ ପ୍ରଧାନ । ସମାନ ରସ ଏବେ ଶୁଣ ।
ଯେ ନାୟିକାନାୟକ ଥାଇ । ଧନେ ସୁରତରସ ଦେଇ ।
ସେ ନାରୀ ଗଣିକା ସଦୃଶ । ତାଙ୍କୁ ଭଜନ୍ତି କୁପୁରୁଷ ।
ରସିକ ପୁରୁଷ ନିର୍ଦ୍ଧନେ । ସେ ନାରୀ ଛାଡଇ ତକ୍ଷଣେ ।
ଅଧମ ଯେବେ ଧନ ଦେଇ । ତା ମନ ତାହାଙ୍କୁ ରମଇ ।
ଧନ ପ୍ରଧାନଟି ଏ ରସ । ଏଥିରେ ନାହିଁ ପ୍ରେମ ରସ ।
ବର୍ତ୍ତଣୀ ରସ ଏବେ ଶୁଣ । ଯାଇଲେ ପୁରୁଷ ନିର୍ଦ୍ଧନ ।
ନ ଛୁଟ ପାଖ ସତ ଦଣ୍ଡ । କି ଅବା ଏଥିରୁ ବିଶେଷ ।
ଅନେକ ପୁରୁଷେ ମିଳଇ । ଯେବେବନ୍ଧେ ଶାନ୍ତି ନ ଲଭଇ ।
ଗାଢ଼ ସୁରତ ସହିଁ ଯାଇ । ତା ମନ ତାହାଙ୍କୁ ରମଇ ।୧୬୧।
ସେ ଯେବେ ଉଚ୍ଚ ନୀଚ ଜାଡ଼ । ତାର ତା ଠହୁଁ ନାହିଁ ବଡ଼ ।
ତାହାର ବଚନେ ବିଶ୍ୱାସ । କରଇ ସ୍ୱାମୀ ସୁତ ନାଶ ।
ସର୍ବ ସମ୍ପଦ ପରିହରେ । ତା ସଙ୍ଗେ ଚଳେ ଦେଶାନ୍ତରେ ।
ତହିଁ ଶୋଭଇ ମନେ ମନେ । ତା ଠହୁଁ ବଳ ଆଉ ଜଣେ ।
ସୁରତ ଅପାରେ ବିଶେଷ । ତା ଠହୁଁ ପଇଲେ ପୁରୁଷ ।
ତା ବୋଲେ ତାଙ୍କୁ ନାଶ କରେ । ତା ସଙ୍ଗେ ଏକାନ୍ତେ ବିହରେ ।
ସେ ପୁରୁଷହିଁ ନୋହେ ମୂଳ । ପୁଣି ଲୋଡ଼ଇ ତହୁଁ ବଳ ।
ଗାଢ ସୁରତ ମୂଳ ତହିଁ । ପୀରତି ଅଂଶ ଲେଶ ନାହିଁ ।
ନିର୍ଲଜ୍ଜ ନିର୍ଦ୍ଦୟ ନିର୍ଭୟେ । ଷୋଡଶ ଅଭୀର ଉପାସ୍ୟେ ।୧୭୦।
ଏରୂପେ ବନ୍ଧପୀଙ୍କ ରସ । ଶୁ ଯେ କହିଲୁ ପୀରବାସ ।

ପୁଣି କହୁଛୁଁ ଏବେ ଶୁଣ । ଯେ ଶୁଦ୍ଧପ୍ରେମୀର ଲକ୍ଷଣ ॥
ପ୍ରକ୍ରିୟା ମଧ୍ୟେ ଶୁଦ୍ଧପ୍ରେମା । ନେ କହୁ ତାହାଙ୍କ ମହମା ॥
ଅଷ୍ଟ ବରଷ ଲୋକ ଯାଉ । ନବମ ପ୍ରବେଶ ହୁଅଇ ॥
ପ୍ରେମ କପୋତ ଯଚ୍ଛା ନଦ । ଫୁଟନ୍ତି ଶବ୍ଦର ଗାଉଛି ॥
କାର୍ତ୍ତିକ ମଦର ସହାନ । ଶକ୍ତିକ୍ରମରେ ଚଲେ ଦାନ ॥
ପ୍ରେମିକ ପୁରୁଷ ପଣରୁଁ । ଏ ଯଉବନ ତାଲୁ ଦେଲୁଁ ॥
ଏମନ୍ତେ ବଞ୍ଚା ନନ ମନେ । ଫୁଟନ୍ତି ପାଙ୍ଗି ଚରଣେ ॥
ଯେବେ ଦଧାରା ବଶେ ଥାଇ । ଅନ୍ୟେକ ପଢ ବସ୍ତ୍ର ହୋଇ ॥
ତା ସଙ୍ଗେ ଥାନ୍ତି ଲକ୍ଷବରେ । ବନ୍ଦୀ ଯେମନ୍ତ ବନ୍ଧଘରେ ॥
କାହାକୁ କହିବେ ସେ କଥା । ମଙ୍ଗଳା ଯେଉଁ ମନୋବ୍ୟଥା ॥
ଏହି ଗୁହାଂସ ଅକଳନ । ମଙ୍ଗଳା ଜାଣି ତଉ ତରୁ ॥
ତାହାଙ୍କ ଦୃଢପ୍ରେମ ଜାଣି । ପ୍ରସନ୍ନ ହୁଅନ୍ତି ଭବାନୀ ॥
ପ୍ରେମିକ ପୁରୁଷ ଲକ୍ଷଣ । ତାହାଙ୍କୁ ହୁଅଇ ପ୍ରସନ୍ନ ॥
ଏକାନ୍ତ କେଟ ଚତୁଷ୍ପକ୍ଷ । କଟାକ୍ଷେ ମୋଶାଇ ଚଟକ୍ଷ ॥
ମନରେ ମନ ମିଶେ ସଇଁ । ଜୀବନ ପ ଲକ୍ଷ ହୁଅଇ ॥
ନିର୍ମଳ ଶୁଦ୍ଧପ୍ରେମ ମୋହେ । ଲକ୍ଷଣେ ଯାଶୋରନ୍ତି ଦେହେ ॥
ପରମେ ଜୀବ ପ୍ରାପ୍ୟେ ମିଶେ । ପିଣ୍ଡ ବ୍ରହ୍ମାଣ୍ଡ ଶୂନ୍ୟ ବଶେ ॥
ଦର୍ଶନ ମାତ୍ରକେ ଏ ଗତି । ଏମନ୍ତ ନିର୍ମଳ ପୀରତି ॥
ସୁରତି ବୋଲେ ଏତେ ମୂଳ । ଦର୍ଶନେ ହୋଇନଥି ଫଳ ।୭୦॥
ତା ସଙ୍ଗେ ଥିଲେ ଯୋଗବନେ । କେତେ ବୈକୁଣ୍ଠ ପ୍ରାପ୍ତ ମନେ ॥
ବୈକୁଣ୍ଠ ତାଳ ସଙ୍ଗତ । ଯେସନେ ଘୋର ଜଙ୍ଗାବନ ॥
ତା ସଙ୍ଗ ଛଡ଼ାଇବା ଧର୍ମ । ତାକୁ ସେ ବୋଲନ୍ତି କୁକର୍ମ ॥
ଗୁରୁବଚନ ବେଦବାଣୀ । ଶାନ୍ତକୁଁ ଅଧିକ ତା ମଣି ॥

ଦେ ବୋଲେ ଦଣ୍ଡ ସର୍ବ ନାଶ । ଲୋକେ କରନ୍ତେ ଉପହାସ ॥
କରନ୍ତେ ପଣ୍ଡିତ ଜର୍ବରେ । ଅନାଦି ହୋଇବ ନାଦିରେ ॥
ଛାଡନ୍ତେ ସ୍ୱାମୀ ବନ୍ଧୁ ସୁତେ । ତହିଁକି ଇଚ୍ଛା ନାହିଁ ଚିତ୍ତେ ॥
ସର୍ବସମ୍ପଦ ନେବେ ଭୂପ । ତହୁଁ କି ମନେ ନାହିଁ ତାପ ॥
ଦେ ବୋଲେ ନଷ୍ଟ ହେବ ପ୍ରାଣେ । ତହିଁକି ଇଚ୍ଛା ନାହିଁ ମନେ ॥
ସର୍ବସମ୍ପଦ ଦେହ ପ୍ରାଣ । ତା ପାଦେ କରେ ସମର୍ପଣ ।୬୧୦
ପ୍ରେମପୀୟୂଷରସ ଶାଦ । ଅନ୍ୟ ରସ ନ ଲାଗଇ ॥
ବ୍ରହ୍ମାଦି ରୁଦ୍ରାଦି ଯେ ଦେବେ । କନ୍ଦର୍ପ କୁବେର ବାସବେ ॥
ଭୂପତି ଗନ୍ଧର୍ବ କିନ୍ନରେ । ସେ ତୃଣଜ୍ଞାନହିଁ ନ କରେ ॥
ଦେଖି ପ୍ରତିମା ପ୍ରିୟ ରୂପ । ବିଷ୍ଣୁଙ୍କୁ ନାହିଁ ଭୁରୁକ୍ଷେପ ॥
ବ୍ରହ୍ମଲୋକାଦି ଦେବ କି ସେ । ଗୌରବର୍ଗ ତୁଚ୍ଛ ପ୍ରାୟ ଦିଶେ ॥
ସେ ସର୍ବ ଜ୍ଞାନଧର୍ମ ଯାକ । ମୁଁ ବୋଇଲେହେଁ ଅପ୍ରମାଣ ॥
ମୋର ବଚନ ନ ଶୁଣନ୍ତି । ଏମନ୍ତ ଦୃଢ଼ ପ୍ରେମ ପ୍ରୀତି ॥
ନିଷ୍ଠା ପ୍ରତିଷ୍ଠା ଶୁଦ୍ଧାଶୁଦ୍ଧ । ସେ ପ୍ରେମେ କି ବିଧି ନିଷେଧ ॥
ପ୍ରଭୁ ସେବକ ବନ୍ଧୁ ସଖା । ସେ ପ୍ରେମେ ନ ମିଶେ ଏମାନ ॥
ପ୍ରେମଙ୍କ ସ୍ୱରୂପଟି ମୁହିଁ । ମୋ ବିନୁ ପ୍ରେମଜ୍ଞାତା ନାହିଁ ॥
ତାହାଙ୍କ ଭାବ ଅନୁସାର । ପ୍ରେମଙ୍କରୂପେ ଅବତାର ॥
ତାହାଙ୍କୁ ମନୋରଥ ଦେଇ । ସେ ପ୍ରେମରସେ ବଶହୋଇ ॥
ସେ ଭାବ ସେନ ଆତ୍ମା ମତେ । ପୁଣି ମିଳଇ ଅଳ୍ପ ପ୍ରାଣେ ॥
କାର୍ଯ୍ୟ ଯେ ଅତିଶର୍ଯ୍ୟ ସ୍ଥଳ । ସକଳ ଲୀଳା ଏଥେଁ ଠୁଳ ॥
ଅଶେଷ ସୃଷ୍ଟି ତ୍ରିଜ ସ୍ଥାନ । କାର୍ଯ୍ୟରେ ମୋର ପ୍ରଭୁପଣ ॥
ଆମ୍ଭେ ଯେ କାର୍ଯ୍ୟନାଶ୍ରେୟ । ତୁମ୍ଭରେ ପ୍ରେମ ମିଶି ରହୁ ॥
ନିଷ୍ଠା ପ୍ରତିଷ୍ଠା ଶୁଦ୍ଧାଶୁଦ୍ଧ । ମିଶିଛୁ ଏ ବିଧିନିଷେଧ ॥

ପ୍ରଭୁ ସେବକ ଭାବ ଯହିଁ । ଏ ପ୍ରେମେ ଏବେ ଗୋଳ ଅଛି
ଅନ୍ତ ଇଚ୍ଛା ଯହିଁ ମିଶେ । ସେ ପ୍ରେମେ ମୋ ଆତ୍ମା ନ ଭସେ
ବାହ୍ୟରେ ଥାଇ ଏଥେ ଭାସି । କେବଳ ଆତ୍ମାରେ ନ ମିଶି ।୩୩୦
ପ୍ରେମରେ ଭକ୍ତ ମିଶେ ଯହିଁ । ଭକ୍ତ ଭଗବାନେ ମୁଁ କହଇ ।
ଏ ପ୍ରେମେ ମୋତେ ନ ଲଭଇ । ଦର୍ପଣ ପରି ପ୍ରାପ୍ତ ହୋଇ ।
ନିର୍ମଳ ସ୍ୱରୂପ ପ୍ରକାଶ । ମଳିନ ଭାବକୁ ଅଦୃଶ୍ୟ ।
ତୁମ୍ଭ ହୃଦରେ ଦବ୍ୟ ଜ୍ଞାନ । ଠାକୁର ବୋଲି ମୋତେ ଜାଣ
ଠାକୁର ନହିଁ ଭକ୍ତ ତତ୍ତ୍ୱ । ସେବକ ଭାବକେ ଉଚିତ ।
ଯେ ଯାହା ସେବା ଯେଣୁ ସ୍ଥାନେ । ତୁମ୍ଭେ ଯେ ଶଟ ଶବ୍ଦ ମନେ ।
ମୋ ଜନ ଅବନଣ ଚଳି । ସେବାରୁ ହୋଇଛ ସୁହାଗୀ ।
ସେ ଶୁଦ୍ଧପ୍ରେମାଙ୍କ ଚରଣେ । ମୁହିଁ ଶଟଙ୍କ ଦାସ ପଣେ ।
ଯେବେ ଭୁଞ୍ଜନ୍ତି ନନ ମନ । ଅମ୍ଭଙ୍କୁ କରନ୍ତି ଉତ୍ସବ ।
ସେ ବାଳ ଯେବେ ସ୍ତଣଚଇ । ଦେବ, ଜାଣଇ ଆତ୍ମା ମୋର ।
ସେ ବେଦ ସ୍ତୁତି ବ୍ରହ୍ମାମୁଖେ । ମୁଁ ନ ଶୁଣଇଁ ତେତେ ସୁଖେ ।
ସେବକ ଭାବେ ନହିଁ ଥାଇ । ହୋଇ ଐଶ୍ୱର୍ଯ୍ୟ ପାସୋରଇ ।
ଏ ମୋର ପ୍ରେମ ଧର୍ମ ଧନ । ସେ ପ୍ରେମରୂପା ରୂପା ଧ୍ୟାନ ।
ତାହାଙ୍କ ମନ ଏବେ ଶୁଣ । ପଦଷ କର ଗୋ ଶ୍ରବଣ ।
ଆତ୍ମା ସହିତେ ତାହାଙ୍କର । ଯେରୂପେ ଅଛଇ ବେଭାର ।
ଝୋଲ ଦେଖିଲେ ମୋ ବଦନେ । ଘୋଟନ୍ତି ପିଙ୍ଗଳ ବସନେ ।
ଶୋଷାରୁ ଯେଉ ଫୁଲ ମାଳ । ଶୋଷେ ଦଅନ୍ତି ମୋର ଭଳ ।
ଅନ୍ନ ବ୍ୟଞ୍ଜନ ଏକ ଥାଳେ । ସଙ୍ଗରେ ଭୁଞ୍ଜୁ ଏକମେଳେ ।
ତାମ୍ବୂଳ ଦେଖି ତାଙ୍କ ମୁଖେ । ମୁଁ ଯେ ମାଗଇ ଅହ୍ଲାସୁଖେ ।
ଅଧରେ ଅଧର ମେଳାଇ । ମୁଖତାମ୍ବୂଳ ମୁଖେ ଦେଇ ।୩୪୦

ଲବଣଁ ଯେତେ ସ୍ୱାଦୁ ତହିଁ । ଅଶେଷ ସଂଖ୍ୟ ଶ୍ଳେଷ ନାହିଁ ॥
ଦଅନ୍ତି ନଅନ୍ତି ଚମ୍ବନ । ସେ ସୁଖ ନ ପାସୋରେ ମନ ॥
ବିଶୁଦ୍ଧ ପ୍ରେମ ଯେବେ ନାହିଁ । ଅମୃତ ଭୁଞ୍ଜିବ ମୁଁ କାହିଁ ।
ଯେବେ ପବିତ୍ର ପୁଣ୍ୟ ଥାଇ । ଉଚ୍ଛିଷ୍ଟ ଅଧ ସୁଖେ ଖାଇ ।
ଏ ମୋର ସ୍ୱଭାବ ପ୍ରକୃତି । ଜାଣନ୍ତି ସେହି ପ୍ରେମାବତୀ ।
ତୁମ୍ଭେ ଯୋ ଶୁଣ ଦେଇ ଚିତ୍ତ । ଗୁପତ କରୁଛୁଁ ବ୍ୟକତ ।
ଏ ପ୍ରେମ ଅଧିକାର ସ୍ଥାନ । ଶ୍ରୀ ବ୍ରଜଭୂମି ବୃନ୍ଦାବନ ।
ଯାହାର କୂଳେ କାଳିନ୍ଦ । ଶ୍ରୀକୃଷ୍ଣବନିତା ବିନୋଦ ।
ଯହିଁର ନାମ ଗୋବର୍ଦ୍ଧନ । ଶ୍ରୀ ବଂଶୀବଟ ଅଚ୍ଛାଦନ ।
ବକୁଳ କଦମ୍ବ କଲମ । ମାଧବୀ ମାଳତୀ କୁସୁମ ।୩୬୦।
କେତେ ଜାତିଙ୍କ ତରୁଗଣେ । କେତେ ଅହ୍ଲାଦ ଫଳମାନେ ।
ଲତା ଦିଅନ୍ତି ବାଞ୍ଛା ଫଳ । କେତେ ସୌରଭ ପୁଷ୍ପକୁଳ ।
ଏବିଧି ପୁଷ୍ପ ସଉରଭେ । ମତ୍ତ ମଧୁପ ମଣ୍ଡଳେରେ ।
କେତେ କୋକିଳ ଶାରୀ ଶୁକ । କପୋତ ଚକୋର ମୟୂର ॥
ଯେ ଖଗ ମୃଗ ତରୁ ତୃଣ । ନବୀନ ପ୍ରେମରେ ସମ୍ପୂର୍ଣ୍ଣ ।
ଗୋରୁ ଗୋପାଳ ଗୋପୀବୃନ୍ଦ । ବିବିଧ ବିନୋଦ ଆନନ୍ଦ ।
କାଳିନ୍ଦୀ ହ୍ରଦ କୋକନଦ । କଞ୍ଜ କହ୍ଲାର କୁମୁଦ ।
ହଂସ ହଂସାଳୀ ଚକ୍ରବାକ । କରନ୍ତି କେଳି ଏକୁଁ ଏକ ।
ଶୀତଳ ସମୀର ସୁବାସ । ଝରଇ ପୁଷ୍ପରଜ ରସ ।
ବୃକ୍ଷ ଛାୟାରେ ଜଳ ନିଶି । ଚନ୍ଦ୍ର ବଚନ୍ଦ୍ର ଭୂମି ଦିଶି ।
ସେ ନଦୀ ତଟେ ଉପବନ । ଶ୍ରୀପତି ପ୍ରେମ ମର୍ମସ୍ଥାନ ।
ସେ ପ୍ରେମାବତୀଙ୍କ ସଙ୍ଗରେ । ପ୍ରେମ ଅନେକ ରଙ୍ଗରସେ ।
ସେ ସୁଖାନନ୍ଦେ ଯୋଉ ମୋହେ । ଜଗତେ ସଙ୍ଗ ରଙ୍ଗ ଦେଇ ।

ସେଠାରେ ମୋ ଅସ୍ମା ବସନ୍ତେ । ବାହ୍ୟରେ ଥାଇ ଧର୍ମଧାମେ ॥
ନିତି ଦିବସ ଅନୁକ୍ଷଣେ । ସେ ପ୍ରେମାବତୀଙ୍କ ଚରଣେ ॥
ଜାଣନ୍ତୁ ଜନ ଅସ୍ମାମାନ । ପାଶୋର ଥାଇ ଜନ୍ୟ ସ୍ତୁତ ॥
ସେ ପ୍ରେମାବତୀଙ୍କ ମହିମା । କେ କହିପାରେ ଗୁଣସୀମା ॥
ଅଧର୍ମ ପଥ ଅତେବାଳନ୍ତି । ନିର୍ବାଣ ପଦକୁ ଲଭନ୍ତି ॥
ଏ ଉକ୍ତ କର୍ମ ତାହାଙ୍କର । ବ୍ରହ୍ମାଦି ରୁଦ୍ରେ ଅଗୋଚର ॥
ମୋ ରୂପ ଆଦି ଚତୁର୍ଦ୍ଦଶ । ତାହାଙ୍କ ରୂପରୁ ପ୍ରକାଶ ।୩୮୦ ॥
ସେହି ବଳୁନ୍ତ ତାହାଙ୍କର । ମୁଁ ଦଶରୂପୀ ବିଶ୍ୱମ୍ଭର ॥
ମୋ ତହିଁ ଭାବ ମୋର ବହୁ । କେବଳ ନାମ ମାତ୍ର ଅଛୁ ॥
ଏ ଯେ ମୋହର ନିଜ ଦେହ । କେବଳ ତାଙ୍କ ଅନୁଗ୍ରହ ॥
ସେ ଶ୍ରୀ ସ୍ୱରମା ମହାରମ । କଥନେ କୁହଇ ସକ୍ଷମ ॥
ସବସ୍ତୁ ଗଣ୍ୟା ମୋର ପ୍ରାସ୍ୟ । ବାଞ୍ଛାରୁ ହୋଇନ୍ତି ଉଦୟ ॥
ଜାଣନ୍ତୁ ଜନ ପ୍ରେମରୂପେ । ସୃଷ୍ଟି ରଚନ୍ତି ଏକରୂପେ ॥
ଏଣୁ ମୁଁ ତାହାଙ୍କ ଆସ୍ତୃତ । ସେ ମୋର ପ୍ରାଣ ପଞ୍ଚଭୂତ ॥
ଏବେ ମୁଁ ଯିବି ସେ ଭୁବନ । ସମସ୍ତେ ସାବଧାନେ ଶୁଣ ॥
ଶୁଣିଲେ ଜନ୍ୟନାସ୍ତି ସର୍ବ । ଗ୍ଲାନିଲ ସୁହାସିନୀ ଗର୍ବ ॥
ତୋ ପଦପଦ୍ମତଳେ ପଡି । ଉଷ୍ମା କହୋଇଲେ କରଯୋଡି ॥
ନୟନେ ଅଶ୍ରୁ ଅଜ ଥଳ । କଣ୍ଠରେ ଗଦ୍ଗଦ ବଚନ ॥
ବୋଇଲେ ତୋର ମୁଖ ଚାହିଁ । କରୁଣା ହିନ୍ଦୁ ଗ୍ଲାବକ୍ଷାପୀ ॥
ଅମ୍ଭଙ୍କୁ କର ଏ ଗ୍ଲାଜନ । ସେ ଭୂମି କରନ୍ତୁ ଦର୍ଶନ ॥
ସେ ପ୍ରେମାବତୀଙ୍କ ଚରଣେ । ସ୍ଥାବେ ପୂଜନ୍ତୁ ଦାସୀପଣେ ॥
ସେ ଯେବେ କରୁଣା କରବେ । ନିର୍ମଳ ପ୍ରେମ ଶିଖାଇବେ ॥
ତାହାଙ୍କ ଉପଦେଶ ସେନ । କେଇନ୍ତୁ ତୋର ସୁହାସିନୀ ॥

ନନ୍ଦରାଣୀଙ୍କ ବାକ୍ୟ ଶୁଣି । ତୁ ଆଜ୍ଞା ଦେଲୁ ବେନୁପାଣି ।
ଯେବେ ଗୋ ଯିବ ଗୋପପୁର । ଆମ୍ଭର ଏ ବଚନ ଧର ।
ନିଷ୍ଠା ପ୍ରତିଷ୍ଠା ଶୁଦ୍ଧାଶୁଦ୍ଧ । ତୁମ୍ଭର ଯେ ବିଧି ନିଷେଧ ।
ପ୍ରଭୁ ସେବକ ଭାବ ତୁଲ । ଏହା ଗୋ ଯିବ ଏଥେ ଥୋଇ ।
ଏକାନ୍ତ ଶୁଦ୍ଧପ୍ରେମ ଭାବ । ଜେବେ ସେ ଭୂମି ଯେ ଗମ୍ୟ ହେବ
ଏମନ୍ତ ସେ ଭୂମିରେ ନାହିଁ । ବାଚ୍ଛ ଦେଉଛନ୍ତି ପଢାଇ ।
ଏ ବ୍ରଜବାସିଙ୍କ ସଙ୍ଗରେ । ଯାଉଛ,ନିଜ ଶୁଦ୍ଧଚିତ୍ତେ ।
ତାହାଙ୍କ ମତେ ମତିଦେବ । ଦଶ୍ବ ପ୍ରେମକୁ ପାଇବ ।
ଯେ ପ୍ରେମ ମର୍ମଆଜ୍ଞା ମୋର । ସେ ଭାବ ହୋଇବ ତୁମ୍ଭର ।
ତୋହର ଆଜ୍ଞା ଘେନି ଶିରେ । ଜନ୍ମିଲୁଁ ଆସି ଗୋପପୁରେ ।
ସେ କଥା କସଇଁ ପାସୋରୁ । ତୁ ଯେ ଏ ପ୍ରେମଦଶା ଗୁରୁ ।
ମନ ବଚନ ଚଇତନ୍ୟ । ତୋର ସ୍ୱରୂପ ଭଗବାନ ।
ଅମୃତ ମନୋରଥ ପୂର୍ଣ୍ଣେ । ତୋର ନିଜସ୍ୱ ବୃନ୍ଦାବନେ ।
ଗାଢ଼ ହେ ଏ ତୁ ପଣପଣ । ପ୍ରେମ ପୀୟୂଷ କର ଦାନ ।
ଏମନ୍ତ କହୁଁ କହୁଁ ଗୋରେ । ସେ ଦିବ୍ୟଜ୍ଞାନ ପାସୋରିଲେ ।
ଏହାନ୍ତ ପ୍ରେମେ ହେଲେ ମନ । ଅଧୈର୍ଯ୍ୟ ବେଦକନ୍ୟାଗଣ ।
ଜାନନ୍ତି ମନର ବେଦନେ । ହା କୃଷ୍ଣ ଛଡ଼ିଗଲୁ କେଣେ ।
ଦେଖାଅ ପ୍ରସନ୍ନ ବଦନ । ପରମ ଆନନ୍ଦ ସଦନ ।
ପ ନାନା ବାକ୍ୟ ଭଣି. । ଶୋଭିଲେ ଜଗମନଧନୀ ।
ଜ୍ଞାନ ବୋଲନ୍ତି ମନ ଶୁଣ । ମୂନ କହନ୍ତି ହେ ଗଗନ ।
ଯେ ଲୀଳ ଯେଉଁ ପ୍ରୟୋଜନେ । ପରମ ବ୍ରହ୍ମ ବୃନ୍ଦାବନେ ।
ଯାହା କହିଲେ ବେଦଅଂଶୀ । ସେ କଥା ତୁହି ତୁ ବିଶେଷି ।
କହ ଭୂପତି ପଣ୍ଡିତ । ବୈଷ୍ଣବ ବିପ୍ର ସାରସ୍ୱତ ॥

ନାନା ପ୍ରକାରେ କୃଷ୍ଣଗୁଣ । ଯେମନ୍ତେ ହେବ ଉଚ୍ଚାରଣ ॥
ଏ ଶ୍ରୀ ଭାଗବତ ଚରିତ । ସମୁଦ୍ରଅମୃତ ସମ୍ଭୃତ ॥
ଅମୃତଗର୍ଭ ଯେବେ ହେଲ । ଅମୂଲ୍ୟ ମୁକ୍ତାଫଳ ପାଇ ॥
ଅଚେତ ଅଛି କୁଢ଼ ଥାଇ । ଯେସନ ପ୍ରଘାତ ଲଗାଇ ॥
ସେ ଧରେ ଅନଳ ବହୁତ । ଜ୍ୟୋତି ପ୍ରକାଶଇ ବସ୍ତୁ ॥
ତନ୍ତ୍ରର କୃଷ୍ଣଚରିତ । ସୁଜନ କରନ୍ତି ନିର୍ମିତ ॥
ମଧୁର ଯେସନେ ଇକ୍ଷୁରସ । ଗୁଡ଼ରୁ ଅଧିକ ବିଶେଷ ॥
ଗୁଡ଼ ତଦାର ମିଶ୍ରି ସାର । ସେ ତହୁଁ କରନ୍ତି ବାହାର ॥
ତଦାର ମିଶ୍ରି ଯେ ନ ଚଳେ । ଲୁଣ ଷ୍ଟୁଟ ପ୍ରାପ୍ତ ମଣେ ॥
ସେ ପ୍ରାଣୀ ସେ ସ୍ୱାଦୁବସ୍ତୁ । ଏରୂପେ କୃଷ୍ଣ ପ୍ରେମତତ୍ତ୍ୱ ॥
ଯେ ଏହା ଶୁଣେ ଚିତ୍ତଦେଇ । ତା ଭକ୍ତି ସାଜବୃକ୍ଷ ବଢ଼େ ॥
ଅନ୍ତେ ସେସନ ବେଦେ ଶୂନ୍ୟ । ବେଲଦୂତ ବେଳ ଦଶଗୁଣ
ବଢ଼ଇ ପ୍ରେମ ସେହିମତ । ସ୍ମରଣେ ଦାଅ ଏଥେ ଚିତ୍ତ ॥
ଶ୍ରୀ ଗୋପୀ ଗୋବିନ୍ଦ ଚରିତ । ନାମ ଶ୍ରୀ ପ୍ରେମପଞ୍ଚାମୃତ ॥

ଇତି ଶ୍ରୀ ପ୍ରେମପଞ୍ଚାମୃତେ ଭକ୍ତିବିନୋଦ ଭାଗବତେ ମହାଜ୍ଞାନ ଶୁକପରୀକ୍ଷିତ ସମ୍ବାଦେ ବେଦତନ୍ତ୍ର୍ୟା ଚରିତ ନିର୍ଣ୍ଣୟ କଥନେ ନାମ ପଞ୍ଚମୋଽଧ୍ୟାୟଃ ।

—✳—

ଷଷ୍ଠ ଅଧ୍ୟାୟଃ ।

ଜ୍ଞାନ ବୋଲନ୍ତି ମନ ଶୁଣ । ମୂଳ ତତ୍ତ୍ୱ ହେ ସଜନ ॥
ଉତ୍ତରଦନେ ବେଦଅଂଶୀ । କୃଷ୍ଣ ଗୋଚରନ୍ତି ବନେ ପଶି ॥
ମେଘ ଅନ୍ଧାରେ ରହିଁ ଭର । ସେ ଦେବସନ୍ଧି ସ୍ମରଣ ॥
ଚେତ ପାଇଲେ ଦିବ୍ୟଜ୍ଞାନ । ଜାଣିଲେ କୃଷ୍ଣ ପୂର୍ଣ୍ଣବ୍ରହ୍ମ ॥